# ଯୋଜନା ଭାଗବତ



ଓଡ଼ିଶାରେ ଟ୍ରାକ୍ଟର ଯୋଜନାର ପ୍ରବର୍ତ୍ତନ,
ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀଙ୍କ ଦ୍ୱାରା ଟ୍ରାକ୍ଟର ଚାଳନା

# ଯୋଜନା ଭାଗବତ



ରଚୟିତା

କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକ

ପ୍ରକାଶକ

ଲୋକସମ୍ପର୍କ ବିଭାଗ, ଓଡ଼ିଶା

ଭୁବନେଶ୍ୱର

୧୯୫୪

ମୂଲ୍ୟ—ଦୁଇ ଅଣା ମାତ୍ର

# ଯୋଜନା ଭାଗବତ



## ପ୍ରଥମ ଅଧ୍ୟାୟ

ଶୁଣ ସଧୀରେ ଦେଇ ମନ । କହିବା ଯୁକ୍ତର ବିଧାନ ॥
ଉତ୍କଳ ନାମେ ଦେଶ ସାର । ଯହିଁ ବିଜୟ ଚକ୍ରଧର ॥
ସେ ଦେଶେ ଜୟଦେବ କବି । ରାଧାଗୋବିନ୍ଦ ରସେ ଦ୍ରବି ॥
ରଚିଲେ ଶ୍ରୀଗୀତଗୋବିନ୍ଦ । କାନ୍ତ କୋମଳ ଯାର ପଦ ॥
ଶାରଳା ଶୂଦ୍ର ମୁନି ଯହିଁ । ମହାଭାରତ ଗଲେ ଗାଇ ॥
ଅତିବଡ଼ୀ ସେ ଜଗନ୍ନାଥ । ଗାଇଲେ ଗୀତେ ଭାଗବତ ॥
ଉପେନ୍ଦ୍ର ଅଭିମନ୍ୟୁ ଆଦି । ଛାନ୍ଦ ରଚିଲେ ଗାଢି ଗାଢି ॥
ଆଜି ସେ ଗ୍ରନ୍ଥ ରୂପେ ସାର । ମଣ୍ଡିଇ ଭାରତ ଘର ॥
ତହିଁ ପୁରାଣ ପଣ୍ଡା ନିତି । ପଢ଼ନ୍ତି ପୋଥି ନାନା ଜାତି ॥
ମିଳନ୍ତି ବହୁ ଗ୍ରାମବାସୀ । କି ସାହୁକାର କିବା ଋଷି ॥
ସକଳେ ହୋଇ ଏକମନ । କରନ୍ତି ପୁରାଣ ଶ୍ରବଣ ॥
ଏମନ୍ତ ଏକ ଦିନ ତହିଁ । ସର୍ବେ ଅଛନ୍ତି ମେଳ ହୋଇ ॥
ପୁରାଣ ପାଠ ଶେଷ ହେଲା । ଭଜନ ଦାସ ପ୍ରଶ୍ନ କଲା ॥
ବସିଛ ମୁଖିଆ ଗ୍ରାମର । ସନ୍ଦେହ ମୋର ଦୂରକର ॥
ତ୍ରେତାରେ ରାମଚନ୍ଦ୍ର ଥିଲେ । ସୁଖରେ ପରଜା ପାଳିଲେ ॥
ପରଜା ସୁଖେ ନିଜ ସୁଖ । ପ୍ରଜା ଦୁଃଖରେ ଲଭି ଦୁଃଖ ॥
ଯଶ ରଖିଲେ ଯୁଗେ ଯୁଗେ । ଜଗତ କହେ ଅନୁରାଗେ ॥

ରାମ ରାଜତ୍ୱ ବୋଲି ତାକୁ । ନାହିଁ ତ ଉପମା ଦେବାକୁ ॥
ଏବେ ତ ଏ ଭାରତ ଭୂଇଁ । ପରଜା ମୂଳରେ ଚଳଇ ॥
ବହୁତ କାଳ ପରଦେଶୀ । ଆମ୍ଭ ରାଜ୍ୟରେ ପଇବେଶୀ ॥
ତାଙ୍କ ଶାସନ ଚଳାଇଲେ । ଏବେ ତ ଗୁଡ଼ି ପଳାଇଲେ ॥
ଆମ୍ଭେ ବାଛିଲେଁ ସରକାର । ଚଳିବେ ଏ ରାଜ୍ୟ ବେଭାର ॥
ରାଜ୍ୟରୁ ରାଜପାଟ ଗଲା । ପ୍ରଜାର ଶାସନ ଚଳିଲା ॥
ଶୁଣୁଛୁଁ ଅନେକ ପ୍ରକାର । ଚଳିଛି ଶାସନ ବହୁର ॥
ଆମ୍ଭର ଦୁଃଖ ଯିବ ଯେବେ । ଜାଣିବା ଆମ୍ଭେ ସିନା ତେବେ ॥
ସ୍ୱରାଜ୍ୟ ହୋଇଲା ଭାରତେ । ନବୁଝା କେମନ୍ତେ ଯିବା ପ୍ରତେ ॥
ମୁଖିଆ ଏ ଗ୍ରାମରେ ଅଛ । କହ କେ କି କଥା ଶୁଣିଛ ॥
ଗ୍ରାମ ତ ସହରର ମଥା । ତହିଁକି ହୁଏ କି ବ୍ୟବସ୍ଥା ॥
ଯାଉଛ ସହରେ ନଗରେ । ମିଶୁଛ ସଜ୍ଜନ ସଂଗରେ ॥
ପାଞ୍ଚ ବରଷ ଲାଗି ପରା । ହେଉଛି ଯୋଜନାର ଧାରା ॥
କି ସେ ଯୋଜନା ଫଳ କଷ । କହ ହେ ସଂବାଦ ବିଶେଷ ॥
କହନ୍ତି ମଧୁ ମିଶ୍ରେ ଶୁଣି । ସେ ପଲ୍ଲୀଗ୍ରାମର ଅଗ୍ରଣୀ ॥
ମୁହିଁ ଯା ଶୁଣିଅଛୁ ବାବୁ । ପଚାରିଲେ ତ କହେ ସବୁ ॥

## ମଧୁ ମିଶ୍ରୋବାଚ

ପଞ୍ଚ ବାର୍ଷିକ ଯୋଜନାର । ଦୁଇଟି କଥା ହେଲା ସାର ॥
ଅଧିକ କର ଉତ୍ପାଦନ । ଆଗେ ବଢ଼ାଅ ରାଜ୍ୟଧନ ॥
ଅନ୍ନ ବହୁନେ ହଂସ ହାନି । ଶୁଣିଛ ଭାଗବତ ବାଣୀ ॥
ସେହି କଥାଟି ମୂଳ କରି । ସତ୍ୟ ଧରମ ରାହା ଧରି ॥
ସଂପଦ ବଢ଼ିବା ବହୁର । ଯୋଜନା ପାଞ୍ଚ ବରଷର ॥
ଶାସନ ବିଧିର ନିର୍ଦ୍ଦେଶ । ଅନ୍ୟାୟ ଯେତେ କରି ଧ୍ୱଂସ ॥
ସଂପଦେ ବାଣ୍ଟି ସମାନରେ । ନବ ସମାଜ ସ୍ଥାପନରେ ॥

ନ୍ୟାୟକୁ ମୂଳପିଣ୍ଡ ଧରି । ସମାଜ ଗଢ଼ ଠାଣକରି ॥
ପାଞ୍ଚ ବରଷ ଯୋଜନାର । ଏହି କଥାଟି ଏକା ସାର ॥
ସାର୍ଥକ ହେଲେ ଏ ସାଧନ । ହୋଇବ ଦୁଃଖ ନିବାରଣ ॥
ସୁଖରେ ଜନ ସାଧାରଣ । କରିବେ ଜୀବନ ଯାପନ ॥

### ଭଜନ ଦାସୋବାଚ

ଭଜନ ଦାସେ ଶୁଣି ଏତେ । କହିଲେ ଭାବ ଅନ୍ତର୍ଗତେ ॥
ତେବେ ଅଧିକ ଉତ୍ପାଦନ । ନ୍ୟାୟରେ ତହିଁର ବଣ୍ଟନ ॥
ଦୁଇଟି କଥା ସମଭାବେ । ଯୋଜନା ଢଳୁରଇ ଏବେ ॥
ବୁଝାଇ କହିବ ଆମ୍ଭଙ୍କୁ । ବିଶ୍ୱାସ ଯିବା ଯୋଜନାକୁ ॥

### ମଧୁ ମିଶ୍ରୋବାଚ

ଶୁଣ ହେ ଦାସେ ମନଦେଇ । କହୁଛୁ ସକଳ ବୁଝାଇ ॥
ବଣ୍ଟନ ଉତ୍ପାଦନ ଦୁଇ । ଯୋଜନା ଏକସେ ଧରଇ ॥
କହୁଛୁ ଏହାର କାରଣ । ଶୁଣ ସକଳେ ଦେଇ ମନ ॥
ଅଧିକ ଉପୁଜିଲେ ଖାଲି । ଅଭାବ ନ ଯିବ ତ ଭଲି ॥
ଧନୀ ଅଧିକେ ହେବେ ଧନୀ । ଗରିବ ପାଉଥିବେ ଜାନି ॥
ଏ ତ ନୁହଇ ଅସମ୍ଭବ । ଯୋଜନା ବିଫଳ ହୋଇବ ॥
ତେଣୁ ସମାନେ ହେଲେ ବାଣ୍ଟ । କାହାର ନ ଥିବ ସଙ୍କଟ ॥
ଯା ଅଛି ସମ୍ପଦ ଦେଶରେ । ବାଣ୍ଟିଲେ ସମାନ ଅଂଶରେ ॥
ସକଳେ ହୋଇବେ ଗରିବ । ସୁଫଳ ତହୁଁ ନ ଫଳିବ ॥
ତେଣୁ ଅଧିକ ଉତ୍ପାଦନ । ନ୍ୟାୟରେ ହେବ ସେ ବଣ୍ଟନ ॥
ମୂଳ କରଣ ବେନି ମତ । ଯୋଜନା ହୋଇଛି ଗଠିତ ॥
ପାଞ୍ଚ ବରଷୀ ଏ ଯୋଜନା । ସକଳେ କର ମନେ ଘେନା ॥

### ଭଜନ ଦାସୋବାଚ

କହଇ ସେ ଭଜନ ଦାସ । ହୋଇଣ ଅତି ହସ ହସ ॥

ଏ କଥା ମନକୁ ଆସିଲା । ଯୋଜନା କଥା ବୁଝାଗଲା ॥
ଅଧିକ ଉତ୍ପାଦନ ପାଇଁ । କେଉଁ ବ୍ୟବସ୍ଥା ଅଛି ହୋଇ ॥
କହ ହେ ସକଳ ବୁଝାଇ । ଅବୁଝା ମନ ମାନୁ ନାହିଁ ॥

## ମିଶ୍ରୋବାଚ

ମିଶ୍ରେ କହିଲେ ଶୁଣ ସର୍ବେ । ସେ ମର୍ମ କହୁଥାଇ ଏବେ ॥
ଅଧିକ ଉତ୍ପାଦନ ଆଶେ । ଲୋଡ଼ା ପଡ଼ୁଛି ଯାହା ଦେଶେ ।
ଫସଲ କରିବାକୁ କ୍ଷେତ । ଅଧିକ ଲୋଡ଼ା ଜାଣୁଛତ ॥
ଭୂମି ନ ଥିଲେ କେଣି କାହିଁ । ଅଧିକ ଉପୁଜିବ ତହିଁ ॥
ପଡ଼ିଆ ଉଠିଆ ନ କଲେ । କ ଲଭ କେଣି ଆଶା କଲେ ?
ଉଠିଆ କରିବାକୁ ଧନ । ନିଶ୍ଚୟ ହେବ ପ୍ରୟୋଜନ ॥
ଯୋଜନା କରିଛି ବିଧାନ । ସାହାଯ୍ୟ ମିଳିବଟି ଧନ ॥

## ଦାସୋବାଚ

ଦାସ କହଇ ଧନ ହେଲେ । କଅଣ ହୋଇବା ଭଲେ ॥
ପ୍ରମାଦ ପୁଣି ଅଛି ଯାହା । କହୁଛି ଶୁଣ ଏବେ ତାହା ॥
କଅଣ ଚଷି କସ ହେବ । ମରୁଡ଼ି ବାଧା ଯେବେ ଥିବ ॥
ଆଶାରେ ଆଶାରେ ମରିବା । ଆକାଶ ପାଣି ଚାହିଁ ଥିବା ॥
ପାଣି ନୋହିଲେ କେଉଁ ଜାଣି । ଯୋଜନା କ କରିବ ପୁଣି ॥
ହଳହଳ ମୂଳରୁ ତ ଯିବ । ଗୃହୀର କରମ ଫାଟିବ ॥
ଏଥିକୁ କହ କ ବିଚାର । କରୁଛି ଆମ୍ଭ ସରକାର ॥

## ମିଶ୍ରୋବାଚ

ମିଶ୍ରେ କହନ୍ତି ଶୁଣ ଦାସେ । କହିବା ବୁଝାଇ ବିଶେଷେ ॥
ହୀରାଖଣ୍ଡର ହୀରାକୁଦ । ଶୁଣିଛ ତହିଁ ପଡ଼େ ବନ୍ଧ ॥
ସେପରି ବନ୍ଧ ଠାବେ ଠାବେ । ଦେଶରେ ବନ୍ଧା ହୁଏ ଏବେ ॥
ଏକା ନୁହେ ତ ଏ ଉତ୍କଳେ । ଭାରତ ଖଣ୍ଡେ ନାନା ସ୍ଥଳେ ॥

ଅମାପ ଧନ ବ୍ୟୟ ହୋଇ । ଜଳଭଣ୍ଡାର ମାନ ରହି ॥
ସାଇତି ଜଳ ରଖାହେବ । କ୍ଷେତକୁ ସେ ତ ଯୋଗାଇବ ॥
ମରୁଡ଼ି ବାଧା ନ ବାଧିବ । କଆଣ୍ଣ ଉର୍ବର ହୋଇବ ॥
ଫଳିବ ଫସଲ ପ୍ରଚୁର । ଦେଶର ଦୁଃଖ ହେବ ଦୂର ॥

ଦାସୋବାଚ

ଶୁଣି ଏମନ୍ତ ଦାସ କହେ । ଏ ସିନା ଚାଷୀ ଲାଗି ହୁଏ ॥
ସମସ୍ତେ ଚାଷୀ ତ ନୁହନ୍ତି । ବଞ୍ଚିବେ କହ କେଉଁ ଜାତି ॥
ଯେ ଜନ ନୁହଇଟି ଚାଷୀ । ସେ କି କରିବ ଏକାଦଶୀ ?
କେତେ ତ ଅଛନ୍ତି ବେକାର । କି କରିପାରେ ସରକାର ॥
ଖଟି ଖାଇବା ପାଇଁ ପନ୍ଥା । ଅଛି କି କହ ସେହି କଥା ॥

ମିଶ୍ରୋବାଚ

ବିବିଧ କଳ କାରଖାନା । ବିଧାନ କରିଛି ଯୋଜନା ॥
ଏତେ କହିଲେ ମିଶ୍ର ତହୁଁ । ଭାବନା କାହିଁପାଇଁ ଆଉ ?
ଗଚରକୁଡ଼ୀ ଯେ ନୋହିବ । ଅବଶ୍ୟ ନିଯୋଗ ପାଇବ ॥
ଭାରତବର୍ଷେ ନନା ସ୍ଥାନେ । କର୍ମେ ବଞ୍ଚିବେ ସୁଖେ ଜନେ ॥
ଦାନା ପଛକୁ କନା ଚିନ୍ତା । କହୁଛି ଶୁଣ ସେହି କଥା ॥
ଯହୁଁ ବସିବ ବହୁ କଳ । ଶୁଣ ହେ ହୋଇବ କି ଫଳ ।
ପ୍ରଚୁର କପଡ଼ା ମିଳିବ । ବସ୍ତ୍ରର ଭାବନା ଘୁଞ୍ଚିବ ॥
ସିମେଣ୍ଟ, କାଗଜ ବହୁତ । ଏ ଦେଶେ ହୋଇବ ପ୍ରସ୍ତୁତ ॥
ବ୍ୟୟ ହୋଇବ ବହୁ ଧନ । ସଡ଼କ ହୋଇବ ନିର୍ମାଣ ॥
ପଦାର୍ଥ ନେବା ଆଣିବାକୁ । ଅସଜ ନୋହିବ କାହାକୁ ॥
ବିବିଧ ଶିଳ୍ପ ବ୍ୟବସାୟୁ । ବଢ଼ାଇ ଦେବ ଦେଶ ଆୟୁ ॥
ଇଚ୍ଛା ପ୍ରମାଣେ ଭୂମିଧନ । ନ ରହି ପାରିବ ସେ ପଣ ॥
ଲୋପ ହେଲାଣି ଜମିଦାରୀ । ଯୋଜନା ଥିଲାଟି ବିସ୍ତରି ॥

ବହୁତ କର ଉତ୍ପାଦନ । ଉଚିତ ଭାଗରେ ବଣ୍ଟନ ॥
କରିବେ ଅନୁଷ୍ଠାନ ମାନ । ସମବାୟ ତା ହେବ ନାମ ॥
ଆହୁରି ରହିଛି ଯୋଜନା । କେତେକ କର ପ୍ରବର୍ତ୍ତନା ॥
ଆର୍ଥନୀତିକ ସମାନତା । ଲାଗି ସୁଯୋଗ ଆଣିବ ତା ॥
ନଜର ଦେବେ ସରକାର । ଶିଳ୍ପ ବାଣିଜ୍ୟ ଚଳାଚଳ ॥
ଅତ୍ୟନ୍ତ ଆବଶ୍ୟକ ଯାହା । ଗଢ଼ିବ ଯେଉଁ ପାଏ ତାହା ॥
ଶ୍ରୋତାଏ ଆନନ୍ଦ ହୋଇଲେ । ମଙ୍ଗଳ ହେଉ ହେ ବୋଇଲେ ॥
ଶ୍ରୀ ଜଗନ୍ନାଥ ଚନ୍ଦ୍ରଧର । ଶୁଣିଲେ ଗୁହାରି ଆମ୍ଭର ॥

---

## ଦାସୋବାଚ

ଦାସେ ବୋଇଲେ ଭଲହେଲା । ବିଧାତା ସଦବୁଦ୍ଧି ଦେଲା ।
ଯୋଜନା ସଫଳ ହୋଇବ । ସତେ ଆମ୍ଭର ଦୁଃଖ ଯିବ ॥
ଆଉ ଗୋଟିଏ ପ୍ରଶ୍ନ ଅଛି । କହ ହେ ଜାଣ ଯେବେ କିଛି ॥
କହିଲ ଅନ୍ନ ବସ୍ତ୍ର କଥା । ଉତ୍ତମ ହୋଇଅଛି ସଂସ୍ଥା ॥
ମନ୍ଦ ସକଳ ନାଶ ଯାଇ । ଶିକ୍ଷାର ସର୍ବେ ଠାବ ନାହିଁ ॥
ଶିକ୍ଷା ସଂସ୍କୃତି ଲାଗି କିଛି । ଯୋଜନା ମଧ୍ୟରେ କି ଅଛି ॥
ଅଯୋଗ୍ୟ ହେଲେ ଦେଶ ଲୋକ । କାହୁଁ ସେ ପାଇବେ ଆଲୋକ ?
ତେଣୁ ତୁମ୍ଭଙ୍କୁ ପଚାରଇ । ଯୋଜନା ଅଛି କି ତା ପାଇଁ ॥
କଳା ବିହୀନେ ମାନବର । ଜୀବନ ହୋଇବ ଅସାର ॥
ଏତକ ମନର ଭାବନା । ଏଥକୁ ଅଛି କି ଯୋଜନା ॥
ଶୁଣି କହନ୍ତି ମଧୁ ମିଶ୍ରେ । କହୁଛି ଶୁଣ ସବିଶେଷେ ॥

## ମିଶ୍ରୋବାଚ

ଶିକ୍ଷାସଂସ୍କୃତି ବିନେ କାହିଁ । ଦେଶର ଉନ୍ନତି ତ ନାହିଁ ।
ମାତ୍ରକ ଶୁଣ ହେ ମଞ୍ଜୁସା । ଜଡ଼ ତ ଅଟଇ ପଇସା ॥

ଧନ ନ ଥାଇ ଥିଲେ ମନ । ହୋଇବ ଚିନ୍ତା ଅକାରଣ ॥
ତେଣୁ ପ୍ରଥମେ ଅର୍ଥଖଣ୍ଡ । ଉଚିତ ସିନା ଏ ଯୁକତ ॥
ଯୋଜନା ବିଶେଷ ଭାବରେ । ଅର୍ଥ ଆଗମ ଚିନ୍ତା କରେ ॥
ଏ ଅଟେ ଜାତୀୟ ଯୋଜନା । ଗଣତାନ୍ତ୍ରିକ କଳପନା ॥
ବହୁ ମତରେ ସିଦ୍ଧ ଯାହା । ସ୍ଥାନ ପାଇଲା ଏଥି ତାହା ॥
ପ୍ରଥମେ ଚିଠା ଲେଖାଗଲା । ବହୁତ ଆଲୋଚନା ହେଲା ॥
ସେ ଆଲୋଚନା ଅନୁସାରେ । ଯୋଗ ବିଯୋଗ ହେବାପରେ ॥
ଯୋଜନା କମିସନମାନେ । ଭାବନା ସିଦ୍ଧ କଲେ ମନେ ॥
ବେସରକାରୀ ସରକାରୀ । ଜନଙ୍କ ମତ ଠୁଳ କରି ॥
ଅଞ୍ଚଳ ସରକାର ତୁଲେ । କେନ୍ଦ୍ରର ଶାସକେ ମିଳିଲେ ॥
ସକଳେ ହୋଇ ଏକମନା । ଗଢ଼ିଲେ ଜାତୀୟ ଯୋଜନା ॥
ନାହିଁ ଏଥିରେ ଆଡ଼ମ୍ବର । କଚନ ଝୁଡ଼ି ଦେଖ ତାର ॥
ଯାହା ସମ୍ଭବ ଉଚିତରେ । ଲାଗିବ ଜାତିର ହିତରେ ॥
ଅବସ୍ଥା ତଥ୍ୟ ପରମାଣି । ସହଜ ରୂପରେଖ ଟାଣି ॥
ସହଜସାଧ୍ୟ ହେବ ଯାହା । ଲିଖିଲେ ଯୋଜନାରେ ତାହା ॥
ଏମନ୍ତ ଶୁଣି ଦାସ ଭଣି । ସନ୍ଦେହ ମୋର ଅଛେ ପୁଣି ॥
ଯୋଜନା ସଫଳତା ପାଇଁ । ଯୋଗ ଅଯୋଗ ଦିଅ କହି ।

## ମିଶ୍ରୋବାଚ

ମିଶ୍ର କହନ୍ତି ଶୁଣ ଦାସେ । ସବୁ ତ ଦେଶ ହିତଆଶେ ॥
ଦେଶର ଶାସନ ଚଳଇ । ରାଜା କୋଳନ୍ତେ କେହି ନାହିଁ ॥
ଅଞ୍ଚଳ କେନ୍ଦ୍ର ସରକାର । ମଧ୍ୟରେ ସହଯୋଗ ମୂଳ ॥
ଜନତା ସହଯୋଗୀ ହେଲେ । ସଫଳ ହେବ ସବୁ ଭଲେ ॥
ଦଇବେ ଦେଶେ ହେଲେ ଗୋଳ ଯୋଜନା ହୋଇବ ବିଫଳ ॥
ନ୍ୟାୟ ଶାସନ, ଶୁଦ୍ଧ ମନ । ଯୋଜନା ସିଦ୍ଧିର କାରଣ ॥

### ଦାସୋବାଚ

ଦାସେ କହିଲେ ହୋଇ ତୋଷ । ଏହାକି ଯୋଜନାର ଶେଷ ?
କି ଅବା ଆଉ ଏହାପରେ । ଯୋଜନା ରହିଛି ମନରେ ॥

### ମିଶ୍ରୋବାଚ

ମିଶ୍ରେ କହନ୍ତି ଶୁଣ ବାବୁ । ସବୁ ତ ଗଳ୍ପନାହିଁ ସବୁ ॥
ହୋଇଛି ଏ ଯେଉଁ ଯୋଜନା । ଏହିଟି ମାଝକ ସୂଚନା ॥
ଯୋଜନାର ଏ ଅନୁକୂଳ । ବାୟୁମଣ୍ଡଳ ସୃଷ୍ଟି ମୂଳ ॥
ଏ ଯୋଜନାରେ ଅଛି ଯାହା । କ୍ରମରେ କହିବଇଁ ତାହା ॥
ବେକାର କେହି ନ ରହିବେ । ବିବିଧ କର୍ମରେ ଲଗିବେ ॥
କ୍ଷୁଦ୍ର ବୃହତ ଜଳାଧାର । ରହିଛି ଯୋଜନା ମଧ୍ୟର ॥
କୁଟୀର ଶିଳ୍ପ ଉନ୍ନୟନ । ଯୋଜନା କରିଛି ବିଧାନ ॥
ସହର ଅବା ଗ୍ରାମବାସୀ । କର୍ମ କରିବେ ମିଳିମିଶି ॥
ନୂତନ କଳ କାରଖାନା । ବସିବ ଅଛି କଳପନା ॥
ବଡ଼ ଯେ କାରଖାନା ଥିବ । ତହିଁଲେ ଟିକସ ବସିବ ॥
ଶ୍ରେଷ୍ଠ ଶିଳ୍ପର ବୃଦ୍ଧି ପାଇ । ଉପଯୋଗରେ ଆସିବଇଁ ॥
ମଧ୍ୟମ ଶ୍ରେଣୀ ଲୋକ ଯେତେ । ସୁବିଧା ନପାଇବେ କେତେ ॥
ଅଳପ ଧନେ ଅର୍ଥମନ୍ତ । ଲଭିବ ଅବଶ୍ୟ ପ୍ରଗନ୍ତ ॥
ମଧ୍ୟମବିତ୍ତ ଲୋକେ ଯେତେକେ । ସୁଯୋଗ ଅବଶ୍ୟ ଲଭିବେ ॥
ଏମନ୍ତ ପାଞ୍ଚ ବରଷର । ଯୋଜନା କଥା ହେଲା ସାର ॥
ଏଭଳି କଥା ମନେ ରଖ । ଆହୁରି ଅଛି ତ ଅନେକ ॥
ଠିକେ ଠିକେ ଏ କଥାମାନ । ଆଜ ମୁଁ କରିଲି ବଖାଣ ॥
ଗୌର-ଚନ୍ଦ୍ରିକା ସମ ଏହା । ବର୍ଣ୍ଣନା କଲି ଆଜ ଯାହା ॥
ଭଣଇଁ ଜଣେ ଦେଶବାସୀ । ବଚନ ନହେଉ ମୋ ବାସି ॥
ପାଶୋର ମନୁ ଭେଦଭାବ । ସହଯୋଗରେ ଚଉ ଦେବ ॥

ଆମ୍ଭେ ତ ଭାରତ ସନ୍ତାନ । ହୋଇ ସକଳେ ଏକମନ ॥
ଉଦ୍ୟମ କରିବା ସାଧନ । ଅଥବା ବରିବା ମରଣ ॥
ଜନନୀ ପାଦ ବେନି ଛୁଇଁ । ଆସ ପ୍ରତିଜ୍ଞା କର ଭାଇ ॥
ଯୋଜନା ହୋଇବ ସଫଳ । ନେତ୍ରୀ କେବଳ ମଙ୍ଗଳ ॥
ସାହା ହୋଇବେ ଜଗନ୍ନାଥ । ହସିବ ସୁନାର ଭାରତ ॥
ଭବିଷ୍ୟ ହୋଇବ ଉଜ୍ଜ୍ୱଳ । କଥା ରହିବ କାଳ କାଳ ॥
କାମନା ହୋଇବ ସଫଳ । ଆନନ୍ଦେ ହରି ହରି ବୋଲ ॥

ଇତି ଶ୍ରୀ ଯୋଜନା ଭାଗବତେ ସ୍ୱାଧୀନ ପୁରାଣ
କଥାରମ୍ଭେ ନାମ ପ୍ରଥମୋଽଧ୍ୟାୟ ।

---

## ଦ୍ୱିତୀୟ ଅଧ୍ୟାୟ

### ଦାସୋବାଚ

ଶୁଣି ସାନନ୍ଦ ଗ୍ରାମବାସୀ । ଦାସେ କହିଲେ ହସି ହସି ॥
ସକଳ ଶୁଣିଗଲ ମୁହିଁ । ସନ୍ଦେହ ମନୁ ତୁଟୁ ନାହିଁ ॥
ଏତ ଅଳପ କଥା ନୁହେଁ । କହିଲେ ନ ଚଳିବ ମୁହେଁ ॥
ବହୁତ ଧନ ହେବ ବ୍ୟୟ । କଏ ବା କରିବ ସଞ୍ଚୟ ?
କାହୁଁ ଆଣିବେ ସରକାର । ତୁଲାଇବାକୁ ବ୍ୟୟଭାର ?
କଳ୍ପନା କରିଛନ୍ତି କେତେ । ଜାଣକ ବ୍ୟୟ ହେବ ଏଥେ ।

### ମିଶ୍ରୋବାଚ

ମିଶ୍ରେ କହନ୍ତି ଶୁଣ ଦାସେ । ଧନ୍ୟ ବୋଲିବା ସେ ସାହସେ ॥
ଦୁଇ ହଜାର ଅଣଷଠି । କୋଟି ଟଙ୍କାର କଥା ଏ ଟି ॥
ଯୋଜନା ସାର୍ଥକ ହୋଇବ । ଯେବେ ଏ ଧନ ବ୍ୟୟ ହେବ ॥
କେନ୍ଦ୍ର, ଅଞ୍ଚଳ ଦୁହେଁ ମିଶି । ବାର୍ଷିକ ରାଜସ୍ୱରୁ କଷି ॥

ସଞ୍ଚିବେ ହୋଇଅଛି ଅଯୁ । ଯୋଜନା ଲାଗି ହେବ ବ୍ୟୟ ॥
ସଞ୍ଚିବ ରେଲବାଇ ଜାଣ୍ଟି । ସେ କଥା ଧରା ଯାଇଅଛି ।
ପାଞ୍ଚ ବରଷ କାଳ ଧରି । ସଞ୍ଚିବେ ଅର୍ଥ ଏହୁପରି ॥
ସାତଶ ଅଠତିଶ କୋଟି । ଏ ଦୁଇଥିରୁ ମିଳିବଟି ॥
ଦେଶରୁ ମଗାହେବ ଋଣ । ମିଶିବ ଆସି ସେହୁ ଧନ ॥
ପାଞ୍ଚଶ କୋଡ଼ିଏ କୋଟି ସେ । ମିଳିବା ପରି ଆଶା ଦିଶେ ॥
ଷ୍ଟାର୍ଲିଙ୍ଗ୍ ପାଣ୍ଠି ନାମେ ଯାହା । ବିଳାତ ଦେଶେ ଅଛି ତାହା ॥
ଦୁଇଶ ନବେ କୋଟି ଟଙ୍କା । ତହୁଁ ମିଳିବ କର ଲେଖା ॥
ଶହେ ଛପନ କୋଟି ଅର୍ଥ । ବାହାର ସାହାଯ୍ୟ ଏ ତଥ୍ୟ ॥
ଆହୁରି ଅଛୁ ମିଳିବାର । ଆଶା କରନ୍ତି ସରକାର ॥
ମିଳୁ ନ ମିଳୁ ଏହି ଧନ । ବସାଇ ଟିକସ ମାଗଣ ॥
ତିନିଶ ପଞ୍ଚଷଠି କୋଟି । ଏଥୁ ମିଳିବା ପ୍ରମାଣଟି ॥
ଏ ରୂପ ସବୁ ହେଲେ ମୋଟ ନ ହେବ ବ୍ୟୟକୁ ନିଅଣ୍ଟ ॥
ଦେଶର ମଙ୍ଗଳ ଅର୍ଥରେ । ଲାଗିବ ନାନା ନିଯୋଗରେ ॥
ଜଳସେଚନ କୃଷି ଆଦି । ବଧିରେ ବଜୁଳି ସମ୍ପାଦି ॥
ଗ୍ରାମମଙ୍ଗଳ ଥଇଥାନ । ଶିଳ୍ପ ଯୋଗାଣ କର୍ମମାନ ॥
ସାଧିତ ହେବ ଏହି ଧନେ । ଦେଶ ପୂରିବ ଧନଧାନ୍ୟେ ॥

### ଦାସୋବାଚ

ଦାସେ କହନ୍ତି ମିତ୍ରେ ଶୁଣ । କର ହେ ସନ୍ଦେହ ଭଂଜନ ॥
ଅର୍ଥର ମୂଳେ ଏ ସମସ୍ତ । ରାଜସ୍ୱ ହେଲା ସାରତତ୍ତ୍ୱ ॥
ନିଅଣ୍ଟ ହେଲେ ରାଜ୍ୟ ଧନ । ତହିଁ କି ହେବ କି ବିଧାନ ॥
ମିତ୍ରେ କହିଲେ ସେଥିପାଇଁ । ଉପାୟ ଶୁଣ କହୁଥାଇଁ ॥
ଆଦାୟୁ ରାଜସ୍ୱକୁ ଯେବେ । ଖରଚ ବଳିପଡ଼େ ତେବେ ॥
ଗଚ୍ଛିତ ପାଣ୍ଠିରୁ ସେ ଧନ । ହୋଇ ପାରିବ ଆୟୋଜନ ॥

ରିଜର୍ଭ ବ୍ୟାଙ୍କରୁ ଅଥବା । ସେ ବ୍ୟୟ ହୋଇଯିବ ନର୍ଭ ॥
ବଳକା ଖର୍ଚ୍ଚ ଚାଲୁ ରହି । ନଅଣ୍ଟ ବେଳ ସାହା ଏହି ॥
ଦାସେ କହିଲେ ଶୁଣି ଏହା । କହ ହେ ମିଶ୍ରେ ପୁଚ୍ଛେଁ ଯାହା ॥
ଅଧିକ ନୋଟ ଛପାଇଲେ । ଏ ବ୍ୟୟ ନୋହିବ କି ଭଲେ ?
ଏ ଭଳି ମୁଦ୍ରାସ୍ଫୀତି ପାଇଁ । ଦେଶର ଅବସ୍ଥା କି ନାହିଁ ॥
ଉପକାର ବା ଅପକାର । ବୁଝିବା ପାଇଁ ମନ ମୋର ॥

## ମିଶ୍ରୋବାଚ

ମିଶ୍ରେ କହନ୍ତି ଶୁଣ ଭାଇ । ସେ କଥା କହୁଛୁ ବୁଝାଇ ॥
ବଳକା ଖର୍ଚ୍ଚ ହୋଇବାରୁ । ଅଧିକ ଟଙ୍କା ହୁଏ ଚାଲୁ ॥
ସବୁ କ୍ଷେତ୍ରରେ କହୁ ଭାଇ । ମୁଦ୍ରାସ୍ଫୀତି ଟି ହୁଏ ନାହିଁ ॥
ନ ବଢ଼ି ଦେଶେ ଉତ୍ପାଦନ । ଚାଲୁ ହୋଇଲେ ବେଶୀ ଧନ ॥
ମୁଦ୍ରାସ୍ଫୀତିଟି ହୁଏ ଜାଣ । ଏ କଥା ଅଶୁଭ ଲକ୍ଷଣ ॥
ଏ ପ୍ରଥା ରୋକିବାର ପାଇଁ । ନାନା ବ୍ୟବସ୍ଥା ଅଛି ହୋଇ ॥
ଗତ ଯୁଦ୍ଧକୁ ହେତୁ କରି । ଥିଲେ ଇଂରାଜ ସରକାର ॥
ଆମ ଦେଶର ଆମଦାନ । ପଦାର୍ଥ ନେଇଥିଲେ କିଣି ॥
ଦେଇ ନ ଥିଲେ ମୂଲ୍ୟ ତାର । ଅନେକ ଧନ ଏ ପ୍ରକାର ॥
ତାଙ୍କ ଦେଶରେ ଅଛି ରହି । ଆମ୍ଭ ଗଚ୍ଛିତ ପାଣ୍ଠି ସେହି ॥
ପ୍ରତି ବରଷ ସେହି ଧନ । ଦିଅନ୍ତି କିଛି ପରିମାଣ ॥
ପଇଠ କରନ୍ତି ସେ ଯାହା । ଆମ୍ଭ ବଳକା ଧନ ତାହା ॥
ଯେତିକି ଦିଅନ୍ତି ସେ ଧନ । ବ୍ୟୟ ହୁଏ ସେ ପରିମାଣ ॥
ଯୋଜନା ବ୍ୟବସ୍ଥାଟି ଅୟୁ । ମୁଦ୍ରାସ୍ଫୀତିର ନାହିଁ ଭୟୁ ॥
ତଥାପି ହୋଇଲେ କଳଣା । ଉନ୍ନତିମୂଳକ ଯୋଜନା ॥
ମୁଦ୍ରାସ୍ଫୀତିର ସମ୍ଭାବନା । ଅଛିଟି ମନେ କର ହେନା ॥
ଏଥିକୁ ଆମ୍ଭ ସରକାର । ଅଟନ୍ତି ଦୃଢ଼ ପରିକର ॥

କେସନେ ଏହି ମୁଦ୍ରାସ୍ଫୀତି । ଦେଶରେ ନୋହିବ ଉତ୍ପତ୍ତି ॥
ତହିଁକି ବିଶେଷ ବିଧାନ । ଖଞ୍ଜି ଅଛନ୍ତି ବୁଦ୍ଧିମାନ ॥
ଟିକସ ଋଣ ରୂପେ ଯେବେ । ଦେଶରୁ ଆୟ ହେବ ତେବେ ॥
ବଳକା ଖର୍ଚ୍ଚ ଊଣା ହେବ । ମୁଦ୍ରାସ୍ଫୀତିର ଭୟ ଯିବ ॥
ସ୍ୱଳ୍ପ ସଞ୍ଚୟ କଲେ ଜନ । ସଂକଟ ହେବ ନିବାରଣ ॥

## ଦାସୋବାଚ

ଦାସେ କହିଲେ ଏହା ଶୁଣି । ସଂଶୟ ଏକ ଅଛି ପୁଣି ॥
ବିଦେଶୀ ଧନ ସହାୟତା । ଆମ୍ଭ ଅହିତ ନୁହେଁ କି ତା ॥
ଆମ୍ଭର ଦେଶ ତ ସ୍ୱାଧୀନ । ହୋଇବୁଁ ପିନା ପରାଧୀନ ॥
ବିଦେଶୁ ଆଣିଲେ ସାହାଯ୍ୟ । ହୋଇବ ତେବେ କେଉଁ କାର୍ଯ୍ୟ ?

## ମିଶ୍ରୋବାଚ

ମିଶ୍ରେ କହିଲେ ଶୁଣ ଦାସେ । ପରାଧୀନତା ନୁହଇଁ ସେ ॥
ରାଜନୀତିକ ପରାଧୀନ । ନୋହିବା ଆମ୍ଭେ କଦାଚନ ॥
ଯେବେ ଉନ୍ନତି ଲାଭ ପାଇଁ । ଧନ ଆମ୍ଭର ଲୋଡ଼ା ହୋଇ ॥
ତହିଁକୁ ବିଦେଶରୁ ଋଣ । ଗ୍ରହଣ ନୋହେ ଅନୁଚିତ ॥
ଉନ୍ନତ ଦେଶ ଯେତେ ଯହିଁ । ବାହାରୁ ଧନ ଆସି ତହିଁ ॥
ଉନ୍ନତି ହୋଇଛି ସାଧିତ । ଏ ମିତ ନୁହେଁ ଅଣହିତ ॥
ପୁଣି ଆମ୍ଭର ଯୋଜନାରେ । ବାହାର ସାହଯ୍ୟ ପ୍ରକାରେ ॥
ଧରାଯାଇଛି ଯେଉଁ ଧନ । ବେଶୀ ନୋହେ ତା ପରିମାଣ ॥
ଖର୍ଚ୍ଚ ସଙ୍ଗେ ତୁଳନାରେ । ବହୁତ ନୋହେ କଳନାରେ ॥

## ଦାସୋବାଚ

ଦାସେ କହନ୍ତି ଶୁଣି ଏହା । ବୁଝିଲୁଁ କହିଗଲ ଯାହା ॥
ଭାବୁଛି ଏବେ ମାନସରେ । ଯେବେ ଏ ସାହାଯ୍ୟ ନମିଳେ ॥
ତେବେ ଏ ଦେଶବାସୀ ସବୁ । ସେ ଧନ ଦେବେ ପିନା ବାବୁ ॥

## ମିଶ୍ରୋବାଚ

ଯଥାର୍ଥ କହୁଅଛ ଦାସେ । ଉତ୍ତର ଦେଲେ ମଧୁମିଶ୍ରେ ॥
ସାହାଯ୍ୟ ଯଦି ନ ମିଳିବ । ଦେଶରୁ ଋଣ ମଗାଯିବ ॥
ଅଥବା ଟିକସ ବଢ଼ିଲେ । ଯୋଜନା ସିଦ୍ଧ ହେବ ଭଲେ ॥
ବଳକା ଖର୍ଚ୍ଚ ମାଣ୍ଡ ଧରି । ଯୋଜନା ହେବ କାର୍ଯ୍ୟକାରୀ ॥
ତ୍ୟାଗଟି ମୂଳ ମନ୍ତ୍ର ତାର । ତହିଁକି ହୋଇବା ତତ୍ପର ॥
ଦାନା ଜନା ଯା ମିଳୁଅଛି । ତାହାର ଥୟ ନାହିଁ କିଛି ॥
ଋଣ ଅଧିକ ହୋଇପାରେ । ଆଗତ ପାଞ୍ଚ ବରଷରେ ॥
କିନ୍ତୁ ଏ ରୂପ ତ୍ୟାଗଫଳ । ଭବିଷ୍ୟ ନିଶ୍ଚୟ ଉଜ୍ଜ୍ୱଳ ॥
ପୂର୍ବେ ତ କହୁଅଛି ମୁହିଁ । ଯୋଜନା ଶେଷ ହେଉନାହିଁ ॥
ଏହାକୁ ପ୍ରାଥମିକ ଜାଣ । ପାଞ୍ଚ ବରଷ ପରିମାଣ ॥
ଏକାଳେ ଯେଉଁ କାର୍ଯ୍ୟହେବ । ଆଖିକୁ ଆୟ ନ ଦିଶିବ ॥
ଦଶ ବା ପନ୍ଦର ବରଷେ । ସୁଫଳ ଫଳିବ ବିଶେଷେ ॥
ତଥାପି ପାଞ୍ଚ ବରଷରେ । ଆୟ ବଢ଼ିବ ନିଶ୍ଚିତରେ ॥
ଏବେ ହୋ ନଅକୋଟି ଟଙ୍କା । ଦେଶର ଆୟ ରୂପେ ଲେଖା ॥
ପାଞ୍ଚ ବରଷ ଗଲେ କଟି । ତାହା ହୋଇବ ଦଶ କୋଟି ॥
ଏଣୁ ଅଳପ ଆୟ ବୋଲି । ବିଚାର କରନାହିଁ ଖାଲି ॥
ଏଥୁଁ ଅଧିକ ଅସମ୍ଭବ । ସୁବୁଦ୍ଧି ମନେ ବିଚାରିବ ॥
ଦେଶର ଅବସ୍ଥାକୁ ଚାହିଁ । ଅଧିକ ଆଶା ଏବେ ନାହିଁ ॥
ଏ ଅଟେ ଅର୍ଥର ବିସ୍ତାର । କହିଲି ଯାହା କଥାସାର ॥
ଆଜର ସଭା ଭଙ୍ଗହେଉ । କାଲି କହିବି କିଛି ଆଉ ॥
ଖାଦ୍ୟ କୃଷିର କଥା ଯେତେ । ଆସିବ ଶୁଣିବ ସମସ୍ତେ ॥
କହିବି ସକଳ ବୁଝାଇ । ଦେଶ ତ ଆମ୍ଭର ଅଟଇ ॥

ସକଳେ ହୋଇ ଏକମନ । କର ହେ ମଙ୍ଗଳ ବିଧାନ ॥
ସାହା ହୋଇବେ ଚକ୍ରଦାହା । ସେ ଏକା ଜଗତର ନାହା ॥

ଇତିଶ୍ରୀ ଯୋଜନା ଭାଗବତେ ଧନ ବିଭାଗ
ବର୍ଣ୍ଣନେ ନାମ ଦ୍ୱିତୀୟ ଅଧ୍ୟାୟ ।

---

## ତୃତୀୟ ଅଧ୍ୟାୟ

ଆଗତ ଆଦ୍ୟ ମାର୍ଗଶୀର । ଯୋଗେ ସେ ଦିନ ଗୁରୁବାର ॥
ଲକ୍ଷ୍ମୀ ପୂଜନ ଘରେ ଘରେ । ସକଳେ ଆନନ୍ଦ ମନରେ ॥
ଦାସଙ୍କ ଚକ୍ରପାଡ଼ୀ ଠାରେ । ଅଧିକାରୀଙ୍କୁ ପୁଚ୍ଛା କଲେ ॥
କହ କହ ହେ ଅଧିକାରୀ । ସକଳ କଥା ସ୍ପଷ୍ଟ କରି ॥
"ଅନ୍ନ ବିହୁନେ ହଂସ ହାନି । ଯୋଗ ସାଧିବ କାହା ଘେନି"॥
ଭାଗବତର ବାଣୀ ଏହା । ପାଶୋରି ଯାଉଛନ୍ତି ତାହା ?
ପେଟ ଲାଗି ତ ସବୁ ନାଟ । କି ଲଭ ବସି ଶୂନ୍ୟ ହାଟ ?
ଆଗେ ଯୋଗାଡ଼ ଖାଦ୍ୟକଥା । ପିଣ୍ଡକୁ ଗଢ଼ିଲା ବିଧାତା ॥
ଏ ଘେନି ଖାଦ୍ୟ କଥା କହ । ତେବେ ଏ ମନ ହେବ ଥୟ ॥
ଖାଦ୍ୟର ଅଭାବ ମୋଚନ । ଚହିଁକି କି ଅଛି ବିଧାନ ॥
କୃଷି ତ ଜୀବିକା ଆମ୍ଭର । ତା ବିନେ ସୃଷ୍ଟି ନାରଖାର ॥

### ଅଧିକାରୀ ଉବାଚ

ଏ କଥା ଶୁଣି ଅଧିକାରୀ । କହିଲେ ଶୁଣ କର୍ଣ୍ଣଧର ॥
ଯୋଜନା ମଧ୍ୟେ କୃଷିପାଇଁ । ଅଧିକ ଦିଗର ଅଛଇ ॥
ଯୋଜନା କର୍ତ୍ତା ଯେଉଁମାନେ । ବିଦେଶୀ ବୁଦ୍ଧିମନ୍ତ ସେମାନେ ॥
ଆମର ଜୀଅନ୍ତେ ଜୀଇବେ । ଆମ୍ଭ ମରଣେ ନାଶଯିବେ ॥
ଆମ୍ଭ ସଭିଙ୍କ ଭାଗ୍ୟଡ଼ୋରି । ଏକା ମୁଠାକୁ ମୋଟ କରି ॥

ବଳ ତ ଗଢ଼ିଛୁ ବିଧାତା । କଏ ବା ନ ଜାଣେ ଏ କଥା ॥
ତେଣୁ ଏ ଦେଶ କଥାମାନ । ବସ୍ତୁରେ ସର୍ବେ ସାବଧାନ ॥
ଘୁଞ୍ଚିବା ପାଇଁ ଅନ୍ନଚନ୍ତା । ହୋଇଛି ବିଶେଷ ବ୍ୟବସ୍ଥା ॥
ବୃଦ୍ଧି ନୋହିଲେ ଉତ୍ପାଦନ । ସକଳ କଥା ଅକାରଣ ॥
ତେଣୁ ହେ କୃଷି ପଦେଏକା । ବ୍ୟସ୍ଥିତି ଲେଖିଲେ ଅଧିକା ॥
ଦୁଇ ସହସ୍ର ଅଣଷାଠି । କୋଟି ଟଙ୍କାର ବ୍ୟବସ୍ଥାଟି ॥
ବ୍ୟୟ ହୋଇବ ଯୋଜନାରେ । ତହିଁରୁ କୃଷି ବାବଦରେ ॥
ତିନଶ ଏକଷଠି କୋଟି । କେବଳ ବ୍ୟୟ ହୋଇବଟି ॥
ଭୂମି କର୍ଷଣେ ଜସ ହେବ । ଜଳ ବିହୁନେ ନାଶଯିବ ॥
ସାର ବିଷୟର ଏ କଥାଟି । ଏକଶ ଅଠଷଠି କୋଟି ॥
ଜଳସେଚନ ଲାଗି ବ୍ୟୟ । ହୋଇବ ବୋଲି ଅଛି ଥୟ ॥
ଦୁଇଶ ଛଅଷଠି କୋଟି । ବ୍ୟୟରୁ ରଖିଛନ୍ତି କାଟି ॥
ଜଳସେଚନ ବହୁ-ମୁଖୀ । ଯୋଜନା ତଳେ ତାକୁ ଲେଖି ॥
ଏ ମଧ୍ୟେ ବିଜୁଳି ଯୋଗାଣ । ହେବାର ଅଛି ଆୟୋଜନ ॥
ଖର୍ଚ୍ଚରୁ ଶତକଡ଼ା ଧରି । ବର୍ତ୍ତିଶ ଭାଗ ଏହିପରି ॥
ବ୍ୟୟିତ ହେବ କୃଷିକର୍ମେ । ଯୋଜନା ଗଢ଼ା ଏହି ମର୍ମେ ॥
ଏ ଭାବେ ଖାଦ୍ୟର ଅଭାବ । ହୋଇବ ନିଶ୍ଚୟ ଲାଘବ ॥
ପରଦେଶକୁ ନ ଚାହିଁବା । ସ୍ୱଚ୍ଛନ୍ଦେ କାଳ କାଟିନେବା ॥

## ଦାସୋବାଚ

ଦାସେ କହିଲେ ଅଧିକାରୀ । ବିଷୟ କହ ହେ ବିସ୍ତାରି ॥
କହିଲ କଥାଟିଏ ଭଲ । ମନରେ ଗପ୍ପାଳି ରଖିଲ ॥
ପରଦେଶରୁ ଖାଦ୍ୟ ଆସି । ପୋଷି ହେଉଛୁ ଦେଶବାସୀ ॥
ଏତେକେ ଆମ୍ଭ ବଡ଼ପଣ । ସରିଯାଉଛି ବୋଲି ଜାଣ ॥
ଆମ୍ଭର ଅପାରଗ ପଣେ । ଏକଥା ସିନା ଶୁଣୁ କର୍ଣ୍ଣେ ॥

ସବୁରି ମୂଳେ ସହଯୋଗ । ବିସ୍ତରିବାର କଥା ଆଗ ॥
ଜାଣ କି ଆହେ ଅଧିକାରୀ ! । ବାହାର ଦେଶୁଁ ଏହିପରି ॥
ଆସେ ଯେ ଖାଦ୍ୟ ଦ୍ରବ୍ୟମାନ । କେତେ ତହିଁର ପରିମାଣ ॥
ବିଅର୍ଥେ ବହୁ ଧନ ଦେଇ । ବିଦେଶୁଁ ଖାଦ୍ୟ ଆଣୁ ବହି ॥
ବୃହୁଁ ଜନକା ପରି ଆମ୍ଭେ । ଅନାଇଁ ରହିଅଛୁଁ ସର୍ବେ ॥
ମୁଣ୍ଡର ଝାଳ ତୁଣ୍ଡେ ମାରି । ଖଟି ତ ଯାଉଁ ଲୋକେ ମରି ॥
ଏ ଧନ ବିଦେଶକୁ ଯାଏ । ବୁଲୁଁ ବାବନା-ଭୂତ ପ୍ରାୟେ ॥
ହେ ଅଧିକାରୀ, ଜାଣ ଯେବେ । ସକଳ କଥା କହ ତେବେ ॥
ତେଣିକେ ଆମ୍ଭଦେଶ ଲୋକେ । କମର ଛଡ଼ିଦେବେ ଆପେ ॥
କେତେ ଆଣୁଛୁଁ ବିଦେଶରୁ । କେତେ ଗଣୁଛୁଁ ଆମ୍ଭେ ଘରୁ ॥
କାହିଁକି ହୁଏ ଏ ଅବସ୍ଥା । କି ତାର ପ୍ରତିକାର ପନ୍ଥା ? ॥

ଅଧିକାରୀ ଉବାଚ

ଶୁଣ ହୋ ଦାସେ ଦେଇ ମନ । କରୁଛି ସକଳ ବଖାନ ॥
ଏତେ ବୋଲି ସେ ଅଧିକାରୀ । କହନ୍ତି ବିଷୟ ବିସ୍ତାରି ॥
ଗତ କେତେକ ବର୍ଷ ହେଲା । ଖାଦ୍ୟ ଏ ଦେଶେ ନ ଅଣ୍ଟିଲା ॥
ତେଣୁ ବିଦେଶୁ ଖାଦ୍ୟଦ୍ରବ୍ୟ । ଆଣିବା ହୋଇଛି କର୍ତ୍ତବ୍ୟ ॥
ପ୍ରାୟ ତିରିଶ ଲକ୍ଷ ଟନ୍ । ଆମଦାନୀର ପରିମାଣ ॥
ଟଙ୍କା ତେତିଶ କୋଟି ପ୍ରାୟ । ଏହା ଫଳରେ ପଡ଼େ ଦେୟ ॥
ଯେ ଅନୁପାତେ ଲୋକସଂଖ୍ୟା । ବଢ଼ୁଛି ଦେଖି ହୁଏ ଶଙ୍କା ॥
ଅଧିକ ଶସ୍ୟ ଉତ୍ପାଦନ । ବିଧାନ ନ କଲେ ବହନ ॥
ବଂଶ ବଢ଼ଇ ଯେଉଁପରି । ଲୋକରେ ଦେଶ ଯିବ ଭରି ॥
ପେଟ ବଢ଼ିବ ଯହୁଁ ଯହୁଁ । ଖାଦ୍ୟ ମିଳିବ ଆଉ କାହୁଁ ?
ବର୍ତ୍ତମାନର ଯେ ଅଭାବ । ଦୁଇ ଗୁଣରେ ବୃଦ୍ଧି ହେବ ।
ଗଣନା କରି ଏ ପ୍ରକାର । ଯେ ଭଳି ହୋଇଛି ବିଚାର ॥

କହୁଛୁ ଶୁଣ ମନ ଦେଇ । ବଳାକ ଅଗ୍ରବର୍ତ୍ତି ଯାଇ ॥
ଯୋଜଣା କରୁଛୁ ଭିଆଣ । ଅଧିକ ଶସ୍ୟ ଉତ୍ପାଦନ ॥
ପାଞ୍ଚ ବରଷ କାର୍ଯ୍ୟକାଳ । ହୋଇଲେ ଯୋଜନା ଏପରି ॥
ନଅଣ୍ଟ କାହିଁ ଉଭାଇବ । ଦଶ ଗୁଣାରେ ଲାଭ ହେବ ॥
ପରକୁ ଆଉ ନ ଚାହିଁବା । ଆପଣା ସୁଖରେ ଚଳିବା ॥

ଦାସୋବାଚ

ଦାସେ କହିଲେ ଏହା ହେଲେ । ମୂଲ୍ୟତ ଊଣା ହେବ ଭଲେ ॥
ଅଧିକ ଶସ୍ୟ ଉପୁଜିବ । ଦେଶର ଦୁର୍ଦ୍ଦିନ ଘୁଞ୍ଚିବ ॥
ଯୋଜନା ହେଲେ ଫଳବନ୍ତ । ନ ଥିବ ଦେଶର ଦୁର୍ଗତି ॥
ଦର ନିଶ୍ଚୟ ହେବ ଊଣା । କି କୁହ ଅଧିକାରୀ ଜନା !

ଅଧିକାରୀ ଉବାଚ

ଶୁଣି କହନ୍ତି ଅଧିକାରୀ । ସେ ଆଶା କରୁଛ କିପରି ? ॥
ଯୋଜନା ଶେଷଭାଗେ ଅବା । ଦର କମିବ ବଳୁରିବା ॥
ଅଧିକ ପରିମାଣେ ତାହା । କମିବ ନ ବଳୁର ଏହା ॥
ଫସାରେ ଯତ୍ନ ଦୃଷ୍ଟି ଦେବ । ଧାନର ଅଭାବ ଶୁଣିବ ॥
ଚାଉଳ ବଦଳରେ ଯେବେ । ଗହମ ଖାଦ୍ୟ ଚଳାଇବେ ॥
ଖାଦ୍ୟସଙ୍କଟ ବହୁ ଗୁଣ । ଊଣା ହୋଇବ ନିଶ୍ଚେ ଜାଣ ॥
ମାଣ୍ଡିଆ ଅଥବା ବାଜରା । ମକା ହୋଇଲେ ଖାଦ୍ୟ ଧାରା ॥
ଖାଦ୍ୟସଙ୍କଟ କିୟଦଂଶ । ହୋଇବ ଊଣା ତ ଅବଶ୍ୟ ॥
ପଡ଼ିଛି ପଙ୍କାଳ ପଡ଼ିଆ । ତାହାକୁ କରିଲେ ଉଠିଆ ।
ଉତ୍ତମ ଖତ ସାର ଦେଇ । କିଆରୀ ଉର୍ବର କରାଇ ॥
ଉତ୍କୃଷ୍ଟ ମଞ୍ଜି ବୁଣା ହେବ । ଅବଶ୍ୟ ସୁଫଳ ଫଳିବ ॥

ଦାସୋବାଚ

କହିଲେ ଦାସେ, ଅଧିକାରୀ । ମୁଁ ଅଛି ମନରେ ବିଚାରି ॥

କଳ ଲଙ୍ଗଳେ ଚାଷ କଲେ । କ୍ଷେତେ ଅଧିକ ଫଳ ଫଳେ ॥
ଆମ୍ଭ ଦେଶରେ ସେ ପ୍ରଣାଳୀ । ହେବକି ନାହିଁ କାର୍ଯ୍ୟକାରୀ ?

ଅଧିକାରୀ ଉବାଚ

ଶୁଣି କହନ୍ତି ଅଧିକାରୀ । କହୁଛି ବୃତ୍ତାନ୍ତ ବିସ୍ତାରି ॥
କଳ ଲଙ୍ଗଳେ ଚାଷ କଥା । ନୁହଇ ଉଚିତ ସର୍ବଥା ॥
ପଡ଼ିଆ ବଣ ବୁଦା ଆଦି । ପଡ଼ିଥିବ ଯେ ଅନାବାଦି ॥
କଳ ଲଙ୍ଗଳ ଲୋଡ଼ା ତହିଁ । ଅନ୍ୟଥା ଆବଶ୍ୟକ ନାହିଁ ॥
ଅବା ଶ୍ରମିକ ଯେବେ ନାହିଁ । କଳ ଲଙ୍ଗଳ ଲୋଡ଼ା ହୋଇ ॥
ଏହି କାରଣୁ ଯୋଜନାରେ । କଳ ଲଙ୍ଗଳ ପ୍ରସାର ରେ ॥
ନାହିଁଟି ବିଶେଷ ଉଲ୍ଲେଖ । ଦାସେ ଏ କଥା ମନେ ରଖ ॥
ଗାଈଁଲ୍ଲା ଲଙ୍ଗଳରେ ଚାଷ । ଉତ୍ତମ ଅଟଇ ବିଶେଷ ॥
କଳ ଲଙ୍ଗଳ ଚାଷ ପାଇଁ । ସମୟ ଏବେ ଆସି ନାହିଁ ॥
ସମବାୟ ଭ ସୂତ୍ର ଧରି । ତିଆରି ହୋଇବ କିଆରୀ ॥
ଆକାରେ ବୃହତ ହୋଇବ । ଏ କଥା ଯେବେ ସମ୍ଭବିବ ॥
କଳ ଲଙ୍ଗଳେ ସେତେବେଳେ । ଫଳଦା ହେବ ଚାଷ କଲେ ॥
ଏବେ ହୋ, ସେ କଥା ପାଶୋରି ଦେଶୀ ଲଙ୍ଗଳେ ଆଗ୍ରେ କରି ॥
ସାତ ପୁରୁଷୀ ଚାଷ ପନ୍ଥା । ଉତ୍ତମ ଅଟଇ ସର୍ବଥା ॥
ଗ୍ରାମ ଗୋଷ୍ଠୀର ଯେ ଯୋଜନା । ସେହିଟି ଶୁଭର ସୂଚନା ॥
ବିନା ଆୟସେ ଚାଷୀ ଭାଇ । ପାରିବ ସାହାଯ୍ୟ ଟି ପାଇ ॥
ଯୋଜନା କରିଛି ବ୍ୟବସ୍ଥା । "ଜାତୀୟ ସଂପ୍ରସାରଣ" ତା ॥
କର୍ମ୍ମୀଏ ରହି ଏ ବିଭାଗେ । ଶିଖାଇ ଦେବେ ଅନୁରାଗେ ॥
ଚାଷର ଉନ୍ନତ ପ୍ରଣାଳୀ । ଦାସେ ନ ଦୁଅ ମନେ ଭଳି ॥
ସମବାୟର ସୂତ୍ର ଧରି । ଚାଷ ଚଳିବ ଯେଉଁ ପରି ॥
ସାହାଯ୍ୟ,ଶିକ୍ଷା ଦେବେ ଜନେ । ସଂପ୍ରସାରଣ କର୍ମ୍ମୀମାନେ ॥

ଆଗତ ଦଶ ବରଷରେ । ଆଶା ହେଉଛି ବିଶେଷରେ ॥
ଜାତୀୟ ସଂପ୍ରସାରଣର । ଯୋଜନା ହୋଇବ ସଫଳ ॥
ଏହି ବିଭାଗ କର୍ମୀ ସର୍ବେ । କୃଷୀଙ୍କ ସେବାରେ ଆସିବେ ॥
ଆହୁରି କଥା ଏକ ଶୁଣ । ଏମନ୍ତ ହୋଇଛି ବିଧାନ ॥
ମିଳିତ କୃଷି ପ୍ରଚଳନ । ଯାଇଁକି ମିଳିବଟି ଋଣ ॥
ରିଜର୍ଭ ବ୍ୟାଙ୍କ ଋଣ ଦେବେ । କୃଷୀଏ ଲାଭ ଉଠାଇବେ ॥
ଉନବିଂଶତି ଛୟାଳିଶ । ସତଚାଳିଶ ସାଲ ଶେଷ ॥
ହିସାବ କହୁଅଛି ଶୁଣ । ଦେଢ଼ଟି ଲକ୍ଷ ମୁଦ୍ରା ଋଣ ॥
ରିଜର୍ଭ ବ୍ୟାଙ୍କ ଦେଇ ଅଛି । ଏ ଋଣ ଏବେ ତ ପଡ଼ିଛି ॥
ଉଣିସି ଶହ ଏକାବନ । ବାଉନ ସାଲର ପ୍ରମାଣ ॥
ସାର୍ଦ୍ଧ ଦ୍ୱାଦଶ କୋଟି ଟଙ୍କା । ରିଜର୍ଭ ବ୍ୟାଙ୍କ ଋଣ ଲେଖା ॥
ଏ ଋଣ ପୁଣିହିଁ ବଢ଼ିବ । ଏକଶ କୋଟି ଟଙ୍କା ହେବ ॥
ପାଞ୍ଚ ବରଷ ଯୋଜନାର । ବିଧାନେ ହୋଇଅଛି ସାର ॥

ଦାସୋବାଚ

ଶୁଣ ହେ ଅଧିକାରୀ ଭାଇ । କହିବ ଆମ୍ଭକୁ ବୁଝାଇ ॥
କାହୁଁ ମିଳିବ ଏହି ଋଣ । କହ ହେ ତହିଁର ପ୍ରମାଣ ॥

ଅଧିକାରୀ ଉବାଚ

ପଚାରିଲ ହେ ଦାସେ ଯାହା । ମୁଁ ଏବେ କହୁଅଛି ତାହା ॥
ଅଞ୍ଚଳ ସରକାରଙ୍କର । ଆହୁରି ରିଜର୍ଭ ବ୍ୟାଙ୍କର ॥
ସମବାୟର ବିଭାଗରେ । ଋଣ ମିଳିବ ସହଜରେ ॥
କୃଷୀଙ୍କୁ ସକଳ ସାହାଯ୍ୟ । ମିଳିବ ଏହା ମନେ ହେଜ ॥
ଆହୁରି ଅଛି ଯେ ବିଧାନ । ଶୁଣି ଆନନ୍ଦ ହେବ ମନ ॥
ପୁଣି ଯୋଜନା କମିଶନ । ପ୍ରସ୍ତାବ ଦେଇଛନ୍ତି ଜାଣ ॥
ସମିତି ମାନ ଗଢ଼ା ହେବ । ସମବାୟ ତା ମୂଳେ ଥିବ ॥

ଉଚିତ ଦରେ କୃଷି ଦ୍ରବ୍ୟ । ବଜାରେ କିଣା ବିକା ହେବ ॥
ଚଳିବା ପାଇଁ ବ୍ୟବସାୟୀ । ସମିତି କରିବଟି ଥାଉ ॥
ନାନା ବିଭାଗେ ବାଣ୍ଟି କରି । ବିକ୍ରୟ ହେବ ଯେଉଁ ପରି ॥
ଚାଷୀର ସୁବ୍ୟବସ୍ଥା ମାନ । ସମିତି କରିବ ବିଧାନ ॥
ଏ ସହଯୋଗ ପନ୍ଥା ମାତ୍ର । ସୁପ୍ରୟୋଜନୀୟ ଅଟେ ଅତି ॥
ସମାଜ, ଅର୍ଥ ନୀତି ବେନି । ଉନ୍ନତ ହେବ ଏହା ଘେନି ॥

## ଦାସୋବାଚ

ଦାସେ କହିଲେ ରହ ରହ । ଆଉ ଗୋଟିଏ କଥା କହ ॥
ଏ ସମିତିର କାର୍ଯ୍ୟ କିସ । ବୁଝାଇ କହ ହେ ବିଶେଷ ॥
ଯାହା କହିଲ ଅଧିକାରୀ । ବୁଝିଲୁ ଏବେ ଭଲ କରି ॥
ତୁମ କହିବା ମର୍ମ ଯାହା । ଶୁଣ ମୁଁ କହୁଅଛୁ ତାହା ॥
କୃଷୀକୁ ଟଙ୍କା ଋଣ ଦେବେ । ଦ୍ରବ୍ୟ ବଜାରେ ବିକାଇବେ ॥
ଏତିକି ଭିନ୍ନ ଆଉ କିଛି । ସମିତି କର୍ତ୍ତବ୍ୟ କି ଅଛି ?
କୃଷିକୁ ଉତ୍ତମ ବିହନ । ଲୋଡ଼ା ହେବ ତ ଏହା ଜାଣ ॥
ଚାଷୀ ସଙ୍ଗକୁ ଉପକାର । କୃଷୀ ଲୋଡ଼ିବ ଭଲ ସାର ॥
ଏଥି ପାଇଁକି ଭଲ କିଛି । ସମିତି ବିଧାନ କରିଛି ?

## ଅଧିକାରୀ ଉବାଚ

ଏ କଥା ଶୁଣି ଅଧିକାରୀ । କହିଲେ ହସି ହସି କରି ॥
ଦାସେ ହେ ପଚାରିଲ ଯାହା । ସମିତି ମୂଳ ମନ୍ତ୍ର ତାହା ॥
ଏ ସବୁ ସମିତି ବହିବ । ସକଳ ଉନ୍ନତି ଦେଖିବ ॥
ସହଯୋଗର ନୀତି ଧରି । ସମିତି ଏହା ଠିକ କରି ॥
ଯୋଜନା ଲକ୍ଷ୍ୟ କହେଁ ଶୁଣ । ଗ୍ରାମର ସୁପରିକଳନ ॥
ସମବାୟର ସୂତ୍ର ବଳେ । ସଭି ଚଳିବେ ଅବହେଳେ ॥
କୃଷିର ଢଗ ବଦଳାଇ । ଲାଗିବେ ଶିକ୍ଷା ଦେବା ପାଇଁ ॥

କୃଷିର ଗବେଷଣା ଥିବ । ପଶୁଣ ଲକ୍ଷ ବ୍ୟସ୍ତ ହେବ ॥
ଏ ଅର୍ଥ ଯୋଜନା ବିଧାନ । ଶୁଣି ଆନନ୍ଦ ହେବ ମନ ॥
ଆଠୁର କେନ୍ଦ୍ର-ଗ୍ରାମମାନ । ବସିବ ବ୍ୟବସ୍ଥା ପ୍ରମାଣ ॥

ବ୍ୟାସୋବାଚ

କଥାଏ ନୂଆ ଶୁଣିଲଇଁ । କେନ୍ଦ୍ର ଗ୍ରାମ ତ ଜଣାନାହିଁ ॥
ଏ କେଉଁ ଜାତି କଳପଣା । କହ ହେ ଅଧିକାରୀ ଜନା ॥
କିପରି ହେବ କେନ୍ଦ୍ରମାନ । କାହିଁ ପାଇଁ କି ଏ ଭିଆଣ ॥
ଏଥିରେ କେଉଁ ଲାଭ ଅଛି । ବୁଝି ମୁଁ ନ ପାରିଲି କିଛି ॥

ଅଧିକାରୀ ଉବାଚ

କହନ୍ତି ତପି ଅଧିକାରୀ । ଶୁଣ ହେ କର୍ତ୍ତା ମନ ଡେରି ॥
ଗୋମାତା ଦେଶର ଜୀବନ । ଏହା ତ ଶାସ୍ତ୍ରର ବଚନ ॥
ଶ୍ରେଷ୍ଠ ତ ଅଟଇ ଗୋଧନ । ଭାରତ ମୂଳ ନୀତି ଜାଣ ॥
ସେହି ନୀତିକୁ ମୂଳ କରି । ଯୋଜନା ଅଛନ୍ତି ବିଚାରି ।
ଚାରି ପାଞ୍ଚୋଟି ଗ୍ରାମ ହେବ । ସେ ପୁଣି ଲାଗି ଲାଗି ଥିବ ॥
ଏଭଳି ଗ୍ରାମ ବସ୍ତୁ ହେବ । କେନ୍ଦ୍ର ଗ୍ରାମେକ ଗଢ଼ା ଯିବ ॥
ପାଞ୍ଚଶ ଛଡ଼ା ଥିବେ ତହିଁ । ଜନ୍ମିବେ ଭଲ ଗୋରୁଗାଈ ॥
ଉତ୍ତମ ଷଣ୍ଢ ବସ୍ତୁ ହେବେ । ସେମାନେ ଗୋଷ୍ଠରେ ରହିବେ ॥
ବଢ଼ିବ ଗୋଧନ ଦେଶରେ । ଉନ୍ନତି ହେବ ଅକ୍ଳେଶରେ ॥
ଛଅଶ କେନ୍ଦ୍ର ଏହିପରି । ଯୋଜନା ଅଛି ସ୍ଥିର କରି ॥
କେନ୍ଦ୍ର ଆଠୁର ଦେଢ଼ ଶତ । ଖୋଲିବ ଯୋଜନାର ମତ ॥
ତିଆରି ପୁଣି ଇଞ୍ଜେକ୍‌ସନ । ବାଛୁରି ହେବେ ପ୍ରଜନନ ॥
ଉତ୍ତମ ଷଣ୍ଢ ଜାତ ପାଇଁ । କଳ୍ପନା ପୁଣି ଅଛି ହୋଇ ॥
ଦୁଇଶ ପଚାଶଟି କେନ୍ଦ୍ର । ବସିବ ଏଥେଁ ନାହିଁ ଦ୍ୱନ୍ଦ ॥
ଔଷଧ, ଉତ୍ତମ ଭୋଜନ । ଗୋରୁଙ୍କ ଲାଗି ପ୍ରୟୋଜନ ॥

ଯୋଜନା ଅଛୁ ତହିଁ ପାଇଁ । ମନରେ ଭାବନା କ ପାଇଁ ?
ଦାସେ ହୋ,ସହଯୋଗ ବଳେ । ଅସାଧ୍ୟ ସାଧ୍ୟ ହେବ ହେଳେ ॥
ଭୂମି ସମସ୍ୟା ଅଛୁ ହୋଇ । କହିବ ସକଳ ବୁଝାଇ ॥
ଗଡ ଅଧିକ ହୋଇଲାଣି । ଆଜ ମୁଁ ନେଉଛୁ ମେଲାଣି ॥
ମାର୍ଗଶୀରର ଗୁରୁବାର । ଲକ୍ଷ୍ମୀ ପୂଜାଟି ଆଜ ସାର ॥
ଆନନ୍ଦ ମନେ ସର୍ବେ ଯାଅ । ମହାଲକ୍ଷ୍ମୀଙ୍କ ଭୋଗ ପାଅ ॥
ସକଳେ ହୋଇ ଏକମନ । କର ହେ ମଙ୍ଗଳ ବିଧାନ ॥
ହସିବ ଏ ଭାରତ ଭୂଇଁ । ଏଥେଁ ସନ୍ଦେହ ଲେଶ ନାହିଁ ॥
କର୍ମର ମୂଳେ ଏ ଜଗତ । କର୍ମଟି ଏକା ଚିର ସତ୍ୟ ॥
ଆମ୍ଭେ ତ ସ୍ୱାଧୀନ ସନ୍ତାନ । ରଖିବା ଦେଶ ଜାତିମାନ ॥
ସରବେ ହୋଇ ଏକ ମେଳ । ଆନନ୍ଦେ ହରି ହରି ବୋଲ ॥

ଇତି ଶ୍ରୀ ଯୋଜନା ଭାଗବତେ ଦାସାଧିକାରୀ ସମ୍ବାଦେ ଖାଦ୍ୟ କୃଷି ବିଚାର ବର୍ଣ୍ଣନେ ନାମ ତୃତୀୟ ଅଧ୍ୟାୟ ।

---

## ଚତୁର୍ଥ ଅଧ୍ୟାୟ

ଗ୍ରାମର ଭାଗବତ ଘରେ । ସକଳେ ମିଳି ସନ୍ଧ୍ୟା କାଳେ ॥
ପୁରାଣ ପାଠ ଶେଷ ହେଲା । ଗ୍ରାମର ବିଚାର ପଡିଲା ॥
ଭଜନ ଦାସେ ସେ ଦିନରେ । ଯାଇ ଅଛନ୍ତି କାର୍ଯ୍ୟାନ୍ତରେ ॥
ଅଧିକାରୀଙ୍କ ପଥ ଚାହିଁ । ଗ୍ରାମବାସୀଏ ଛନ୍ତି ରହି ॥
ସାଧୁ ପଧାନ ବିଚାରିଛି । ଆଜ ସେ ପଚାରିବ କିଛି ॥
ଜମିଦାରି ତ ଉଠିଗଲା । ରଇତ ପ୍ରଥା ଚାଲୁ ହେଲା ॥
ମଧ୍ୟ-ସ୍ୱତ୍ୱର ଅଧିକାର । ଲୋପ ତ ହୋଇବ ଏଥର ॥
ଭୂମି କର୍ଷଣ ଯେ କରିବେ । ଭୂମିର ମାଲିକ ସେ ହେବେ ॥
ଏ ଭେଦ ଯୋଜନାରେ ସ୍ପଷ୍ଟ ହୋଇଛି କେଉଁ କେଉଁ କଥା ॥

ଆଜ ସେ କଥାଟି ବୁଝିବା । ମନରୁ ସନ୍ଦେହ ନାଶିବା ॥
ଅଧିକାରୀ ଏ ପ୍ରବେଶିଲେ । ସର୍ବେ ତାହାଙ୍କୁ ସମ୍ଭାଷିଲେ ॥
ପ୍ରଧାନ ଦଣ୍ଡବତ ହୋଇ । ମନର କଥା ପଚାରଇ ॥

ପ୍ରଧାନୋବାଚ

କହନ୍ତୁ ଆହେ ଅଧିକାରୀ । ଉଠିତ ଗଲା ଜମିଦାରୀ ॥
ଏଣିକ କି ହେବ ବିଚାର । ଶୁଣିବା ପାଇଁ ମନ ମୋର ॥
ମଧ୍ୟ-ସ୍ୱତ୍ୱର ଅଧିକାର । ଲୋପ ତ ହୋଇବ ଏଥର ॥
ପାଞ୍ଚ ବରଷ ଯୋଜନାରେ । ବିଧାନ ହୁଏ କି ପ୍ରକାରେ ॥
ଏଥିକୁ ପଚାରଇଁ କହୁ । ଜାଣିବା ପାଇଁ ମନ ଅଛୁ ॥

ଅଧିକାରୀ ଉବାଚ

କହିଲେ ତହୁଁ ଅଧିକାରୀ । ଶୁଣ ହୋ ଯା ଅଛ ପଚାରି ॥
ମଧ୍ୟ-ସ୍ୱତ୍ୱର ଅଧିକାର । ଲୋପ ତ ହୋଇବ ମୂଳର ॥
ସମବାୟର ସୂତ୍ରେ ଜାଣ । ହୋଇବ ନୂତନ ଭିଆଣ ॥
ନବୀନ ସାମାଜିକ ସଂସ୍ଥା । ହୋଇଛୁ ଏଥିରେ ବ୍ୟବସ୍ଥା ॥
‘କୋଠଚାଷ’ ସେ ବୋଲାଇବ ଚାଷେ ସମସ୍ତେ ଯୋଗ ଦେବ ॥
ଗ୍ରାମର ଯେତେ ଭୂମିଥିବ । ସକଳେ କୋଠରେ ଚଷିବ ॥
ଭୂମିର ହୋଇବ ଉନ୍ନତି । ବଢ଼ିବ ଉତ୍ପାଦିକା ଶକ୍ତି ॥
ଗ୍ରାମ ମଧ୍ୟରେ ସହଯୋଗ । ବଢ଼ିବା ବିଚାରଟି ଆଗ ॥
କଥାଏ କହୁଛି ଆହୁରି । ଯୋଜନା ହୋଇଛି ଯେପରି ॥
ନିଜର ଇଚ୍ଛା ଅନୁସାରେ । ଯେ ଯେତେ ଭୂମି ରଖୁଥିଲେ ॥
ସେ ପ୍ରଥା ଅଚଳ ହୋଇବ । ତହିଁ କି ବାଧା ପ୍ରବର୍ତ୍ତିବ ॥
ଯୋଜନା କମିଶନ ମତ । ସାଧିତ ହେବ ଜନହିତ ॥
ଗୋଟିଏ ହଳ ସାହାଯ୍ୟରେ । ଯେ ଭୂମି ଚାଷ ହୋଇପାରେ ॥
ତହିଁର ତିନିଗୁଣା ଭୂମି । ରଖିବେ ମାତ୍ର ଗୃହ ସ୍ୱାମୀ ॥

ପ୍ରତ୍ୟେକ ପରିବାର ପାଇଁ । ଏହି ନିୟମ ପ୍ରବର୍ତ୍ତଇ ॥
ଯୋଜନା ପୁଣି କହୁଛନ୍ତି । ଭୂମିର ଚାଷୀ ଯେ ଅଟନ୍ତି ॥
ପାଞ୍ଚବରଷ କାଳ ଯାଏ । ରହୁଥିବେ ସେ ସେହି ଠାଏ ॥
ଦଖଲ ଉଚ୍ଛେଦ ନୋହିବ । ଚାଷୀ ଏ ସୁଯୋଗ ଲଭିବ ॥
ଭୂମିରୁ ଉତ୍ପନ୍ନ ଯେ କ୍ଷେତ । ତହୁଁ ଚତୁର୍ଥ ଅଂଶ ମାତ୍ର ॥
ରାଜସ୍ୱ ରୂପେ ଚାଷୀ ଦେବ । ଏଥିରୁ ଅଧିକ ନୋହିବ ॥

## ପଧାନୋବାଚ

ପଧାନ କହଇ ବୁଝିଲି । ଏ କଥା ଜାଣି ମୁଁ ନ ଥିଲି ॥
ମୁଁ ଅଟେ ଜଣେ ଭାଗଚାଷୀ । କୁଟୁମ୍ବ ପୋଷେଁ ଭାଗ ଚଷି ॥
ଜମିଦାରଙ୍କ ନିଜ ଚାଷ । ଭୂମିରୁ ଚଷେଁ କିଛି ଅଂଶ ॥
ପୁଣି ମୋ ବ୍ୟବସାୟ କରି । ଆସିଛି କିଛି ଟଙ୍କା ଧରି ॥
କହଇ ଭୂମି କିଣ ବାପା । ଭାଗ ଚାଷରେ ନାହିଁ ନଫା ॥
ଯେ ଭୂମି ମୁହିଁ ଚଷୁ ଅଛି । ସେ ଖଣ୍ଡି କିଣିବି ଭାବୁଛି ॥
ବହୁତ ମାଗୁ ଅଛି ମୁହିଁ । ଜାଣି ଥିଲେ ତା ଦିଅ କହି ॥

## ଅଧିକାରୀରୁବାଚ

ଏ କଥା ଶୁଣି ଅଧିକାରୀ । କହନ୍ତି ଦେଖିବା ବହୁତ ॥
ହାତ ଚାଷକୁ ଛାଡ଼ ଯାହା । ତହୁଁ ବଳକା ହେଲେ ତାହା ॥
ସେ ଭୂମି-ଅଧିକାରୀଙ୍କର । ନାହିଁ ତହିଁରେ ଅଧିକାର ॥
ଜମିଦାରଙ୍କଠାରୁ ତୁମ୍ଭେ । କିଣି ପାରିବ ତାକୁ ଏବେ ॥

## ପଧାନୋବାଚ

ଏ କଥା ଶ୍ରବଣେ ପଧାନ । କହେ ଆନନ୍ଦ ହେଲା ମନ ॥
ମୁଁ ସିନା କିଣିବି ବୋଲୁଛି । ଆହୁରି ପ୍ରମାଦ ତ ଅଛି ॥
ଜମିଦାରଙ୍କ ପାଶେ ଯେବେ । 'ଜମି କିଣିବି' କହେ ତେବେ ॥

କେଜାଣି କେତେ ମୂଲ ତାର କହିଲେ ବଳ କାହିଁ ମୋର ?
ତହିଁକ ସହଜ ଉପାୟ । ଥିଲେ ହେ ଅଧିକାରୀ କହ ॥

ଅଧିକାରୀଉବାଚ

କହିଲେ ଅଧିକାରୀ ହସି । ପ୍ରଧାନ ଭାବ ନାହିଁ କିଛି ॥
ଜଇର କେତେ ଗୁଣ ଦର । ସ୍ଥିର କରିବେ ସରକାର ॥
ପ୍ରଥମେ ବୁଝି ସ୍ଥିର କର । ସେ ଭୂମି ଜମିଦାରଙ୍କର ॥
ନିଜ ବୃଷର ମାତ୍ରା ଯାହା । ଅଧିକ ଅବା ଊଣା ତାହା ॥
ଯେବେ ଅଧିକେ ତାହା ଥିବ । ତୁମ୍ଭେ ତା ସହଜେ କିଣିବ ॥
ଦରକୁ ନ କର ଭାବନା । ତହିଁକି ରହିଛି ଯୋଜନା ॥
ଯେବେ ହେ ଧନଟି ନ ଥିବ । କିସ୍ତିରେ ପଇଠ କରିବ ॥
ଏ ଅଟେ ଯୋଜନାର ମତ । ନୋହିବ ଏଥୁଁ ବିପରୀତ ॥
କୃଷୀଏ ଆନନ୍ଦ ହୋଇଲେ । ସକଳେ ହରି ବୋଲ ଦେଲେ ॥

ଇତି ଶ୍ରୀ ଯୋଜନା ଭାଗବତେ ଭୂମି ସମସ୍ୟା କଥନେ
ନାମ ଚତୁର୍ଥ ଅଧ୍ୟାୟ

---

## ପଞ୍ଚମ ଅଧ୍ୟାୟ

ଫେରିଲେ ଦାସେ ସନ୍ଧ୍ୟାକାଳେ ମିଳିଲେ ଭାଗବତ ଘରେ ॥
ସକଳେ ହୋଇ ହସ ହସ । ବୋଇଲେ ଦାସେ ଆସ ଆସ ॥
କେଉଁ ଆଡ଼କୁ ଯାଇଥିଲ । କାହିଁକି କାଲି ତ ନ ଥିଲ ॥
ଅଧିକାରୀଏ ଆସିଥିଲେ । ଭୂମି ସମସ୍ୟା ସେ କହିଲେ ॥
ଦାସେ କହିଲେ ଶୁଣ ଭାଇ । ମିଶ୍ରଙ୍କୁ ଡାକି ଆଣ ଯାଇ ॥
ଆଜି ମାଧବ ଅଧିକାରୀ । ଯାଇ ଅଛନ୍ତି ସଭା କରି ॥
ଗ୍ରାମଗୋଷ୍ଠୀର ଯୋଜନାର । ହୋଇଛି ବିଶେଷ ବିସ୍ତାର ॥

ମିଶ୍ରେ ସେ କଥା ଜାଣି ଥିବେ । ଆସିଲେ ବୁଝାଇ କହିବେ ॥
ଏକାଳେ ମିଶ୍ରେ ପ୍ରବେଶିଲେ । ସକଳେ ଆନନ୍ଦିତ ହେଲେ ॥
ମଧ୍ୟରେ ଦେଲେ ସ୍ଥାନ ଛାଡ଼ି । ମିଶ୍ରେ ବସିଲେ ଚକାମାଡ଼ି ॥
କହିଲେ ହସ ହସ ହୋଇ । ସକଳ କୁଶଳ ତ ଭାଇ ?
କାହାନ୍ତି ଅଧିକାରୀ ନନା । ସଭା ଅଶୋଭା ତାଙ୍କ ବିନା ॥
ଡାସେ କହିଲେ ଅଧିକାରୀ । ଯାଇଅଛନ୍ତି ସଭା କରି ॥
ଡାକ ଆସିଲା ତାଙ୍କ ଘରେ । ଶୁଣିଲି ଆସିବେ ଉଚ୍ଛୁରେ ॥
କ୍ଷେତ୍ର ପାଳଙ୍କ ବର ମୂଳେ । ସଭା ବସିଛି ସନ୍ଧ୍ୟା କାଳେ ॥
ସଡ଼କ ହୋଇବ ତିଆରି । ମିଶି ଅଛନ୍ତି ଗ୍ରାମ ଗୃହି ॥
ସମାଜ ଆଉ ଅର୍ଥନୀତି । କି ରୂପେ ଲଭିବ ଉନ୍ନତି ॥
ସଭା ବସିଛି ସେଥିପାଇଁ । ଅଧିକାରୀଏ ଛନ୍ତି ଯାଇଁ ॥
ଗ୍ରାମଗୋଷ୍ଠୀର ଏ ଯୋଜନା । ଏହା ତୁମ୍ଭଙ୍କୁ ଥିଲେ ଜଣା ॥
କହ ହେ ସକଳ ବୁଝାଇ । ଗ୍ରାମବାସୀଏ ଅଛୁଁ ଗୃହୀଁ ॥

## ମିଶ୍ରୋବାଚ

ମିଶ୍ରେ କହନ୍ତି ଶୁଣ ଭାଇ । କହୁଛି ସକଳ ବୁଝାଇ ॥
ଯୋଜନା ବଳେ ହେବ ଯାହା ତୁମ୍ଭେ ହେ ମନେ ରଖ ତାହା ॥
ଉନ୍ନତ କୃଷିର ବିଧାନ । ଲକ୍ଷଟି ଏଥିରେ ପ୍ରଧାନ ॥
ଆଉରି ବିବିଧ ଉନ୍ନତି । ଅଟଇ ଯୋଜନାର ନୀତି ॥
ଗ୍ରାମର ମଙ୍ଗଳ ଭିଆଣ । କୁଟୀର ଶିଳ୍ପ ଉନ୍ନୟନ ॥
ପଡ଼ିବ ବନ୍ଧ ବାଡ଼ ମାନ । ସଡ଼କ ହୋଇବ ନିର୍ମାଣ ॥
ଏହି ଯୋଜନା ଚଳାଇବ । ସର୍ବଥା ଉନ୍ନତି ହୋଇବ ॥
ଏଥିକୁ ଗ୍ରାମବାସୀ ଯେତେ । ମେଳରେ କରିବେ ସମସ୍ତେ ॥
ବିଶେଷ କଥା ଅଛି ଯାହା । ଏବେ ହୋ ଶୁଣ କହେ ତାହା
ସରକାରଙ୍କ କର୍ମଚାରୀ । କରନ୍ତୁ ଏ କଥା ବିଚାର ॥

ବସିଲେ କାର୍ଯ୍ୟ ନ ହୋଇବ । ସକଳ ଯୋଗ ପଣ୍ଡ ହେବ ॥
ଏଣୁ ହେ ହୁଅ ତତପର । ଆପଣା କାର୍ଯ୍ୟ ଆପେ କର ॥
କେବଳ ଏତିକ ମାତର । ସାହାଯ୍ୟ ହେବେ ସରକାର ॥
ଗ୍ରାମ ସେବକ ଜଣେ ଜଣେ । ରହିବେ ଏବେ ସ୍ଥାନେ ସ୍ଥାନେ ॥
ଆସନ୍ତା ଦଶ ବରଷରେ । ଆମ୍ଭ ଭାରତ-ବରଷରେ ॥
ସେବକେ ସକଳ ଗ୍ରାମରେ । ରହିବେ ଯୋଜନା କ୍ରମରେ ॥
ଏମାନେ ଉପଦେଶ ଦେବେ । ଉନ୍ନତ କୃଷି କରାଇବେ ॥
ଏହି ଯୋଜନା ଅନୁକ୍ରମେ । ହେଲାଣି କାର୍ଯ୍ୟ କ୍ରମେ କ୍ରମେ ॥
ଏବେଟି ପଞ୍ଚାବନ ସ୍ଥାନେ । ସେବକ ଛନ୍ତି ଜଣେ ଜଣେ ॥
ଆହୁରି ପଞ୍ଚାବନ ଗୋଟି । ଯୋଜନା ସିଦ୍ଧ ହୋଇବ ଟି ॥
ଆସନ୍ତା ବରଷକେ ଜାଣ । ଏବଧି ହେବ ସମାଧାନ ॥
ପ୍ରତ୍ୟେକ ଗୋଷ୍ଠୀ ତିନଗୋଟି । ଅଞ୍ଚଳେ ହୋଇବ ବିଭକ୍ତ ॥
ପ୍ରତି ଅଞ୍ଚଳେ ଶତ ଗ୍ରାମ । ଅଟଇ ଯୋଜନାର କ୍ରମ ॥
ଷାଠିଏ ସହସ୍ର ହଜାର । ବସନ୍ତି ଥିବଟି ଲୋକର ॥
ଏହି ଅଞ୍ଚଳମାନ ପୁଣି । ପ୍ରାୟ ପାଞ୍ଚଟି ଗ୍ରାମ ଘେନି ॥
କ୍ଷୁଦ୍ର ଅଞ୍ଚଳେ ଭାଗ ହେବ । ଏ କଥା ଅନ୍ୟଥା ନୋହିବ ॥
ଗ୍ରାମସେବକ ଏହି ସ୍ଥାନେ । ନିଯୁକ୍ତ ହୋଇ ଜଣେ ଜଣେ ॥
ବିବିଧ ଉନ୍ନତି ବିଧାନ । ସାଧନ ତାଙ୍କ କାର୍ଯ୍ୟକ୍ରମ ॥

ଦାସୋବାଚ

ଦାସେ କହିଲେ ମିଶ୍ରେ ଶୁଣ । କହିଲ ଯାହା କାର୍ଯ୍ୟକ୍ରମ ॥
ବିସ୍ତାର ବର୍ଣ୍ଣନା କରିବ । ଶୁଣି ସନ୍ଦେହ ମନୁ ଯିବ ॥

ମିଶ୍ରୋବାଚ

ମିଶ୍ରେ କହିଲେ ଶୁଣ ଚେତେବେ । ତାହା ମୁଁ କହୁଅଛି ଏବେ ॥
ପଡ଼ିଆ ଭୂମିକୁ ଉଠିଆ । ଉତ୍ତମ ଖତ ସାର ଦିଆ ॥

ଭଲ ବିହନ ଯୋଗାଇବା । ଗାଈଗୋରୁଙ୍କ ଯତ୍ନ ନେବା ॥
ଗ୍ରାମରେ ସଡ଼କ ପକାଇ । ଯୋଗ କରିବେ ତାକୁ ନେଇ ॥
ପ୍ରଧାନ ରାଜ ପଥ ଭୁଲେ । ଏ ସବୁ ଯୋଜନାର ମୂଳେ ॥
ଗ୍ରାମର ସ୍ୱାସ୍ଥ୍ୟ ସଂବିଧାନ । ଉତ୍ତମ ପାନୀୟ ଯୋଗାଣ ॥
ମଶା ମାଛିଙ୍କ ନିବାରଣ । ହେବ ଏ ଯୋଜନାର କର୍ମ ॥
ବଢ଼ାଇ, କମାର, କୁମ୍ଭାର । ଗ୍ରାମର ଯେତେ କାରିଗର ॥
ଉତ୍ତମ ତାଲିମ ପାଇବେ । ସହଜେ ଶିଳ୍ପ ବଢ଼ାଇବେ ।
ସକଳେ ହୋଇବେ ଶିକ୍ଷିତ । ବିବିଧ କର୍ମରେ ପ୍ରାଷିତ ॥
ଏ ଆଦି ଯେତେ କର୍ମମାନ । ସକଳ ଯୋଜନା ବିଧାନ ॥
ଏ ଗ୍ରାମଗୋଷ୍ଠୀ ଯୋଜନାର । ସହାୟ ଏବେ ସରକାର ।
ଦେଉଅଛନ୍ତି କିଛି ଧନ । ଏ ଅନ୍ତେ କରନ୍ତୁ ମନ ॥
ଭାରତେ ବିଭିନ୍ନ ସ୍ଥାନରେ । ଉଦ୍ଦେଶ୍ୟ ବିଶିଷ୍ଟ ଆକାରେ ॥
ଉନ୍ନତ ଯୋଜନାର ସଂସ୍ଥା । ଚଳବ ରହିଛି ବ୍ୟବସ୍ଥା ॥
ଆଜନ୍ତୁଁ ହୁଅ ସାବଧାନ । ଆପଣା କର୍ମେ ଦିଅ ମନ ॥
ଶୁଣି ସକଳ ଗ୍ରାମବାସୀ । ମନେ ହୋଇଲେ ଅତି ଖୁସି ॥
ରାତ୍ର ଅଧିକ ହୋଇଥିଲା । ସେ ଦିନ ସଭା ମଙ୍ଗଳିଲା ॥
ଯୋଜନା ସଫଳତା ଭାଳି । ସକଳେ ଦେଲେ କରତାଳି ॥

ଇତିଶ୍ରୀ ଯୋଜନା ଭାଗବତେ ଗ୍ରାମଗୋଷ୍ଠୀ ଯୋଜନା
ପ୍ରଣାଳୀ ବର୍ଣ୍ଣନେ ନାମ ପଞ୍ଚମୋଧ୍ୟାୟ ।

---

## ଷଷ୍ଠ ଅଧ୍ୟାୟ

ପର ଦିବସ ସନ୍ଧ୍ୟା କାଳେ । ଗ୍ରାମର ଭାଗବତ ଆଳେ ॥
ମିଳିଲେ ସର୍ବେ ଗ୍ରାମବାସୀ । ଅଧିକାଂଶ ଏ ଛନ୍ତି ଆସି ॥
ସାଧୁ ପଧାନ ପସ୍ତୁରଇ । ଯୋଜନା କଥା ଶୁଣିଲଇଁ ॥

ଜଳ ମଣ୍ଡାଣ ଲାଗି କରୁଛୁ । ଯୋଜନା ମଧ୍ୟରେ କି ଅଛୁ ?
କ୍ଷେତରେ ଜଳ ନ ମାଡ଼ିଲେ । କି ହେବ ଉନ୍ନତି ଭାଳିଲେ ?
କହନ୍ତୁ ଅଧିକାରୀ ଭାଇ । କଥ ଉଡ଼ିବା ଶୁଣୁଥାଇଁ ॥
କପର୍,କେବେ ହେବ ତାହା । ବୁଝାଇ କହିବେ ସେ ଏହା ॥

ଅଧିକାରୀ ଉବାଚ

କହୁଛି ଶୁଣ ହେ ପ୍ରଧାନ । ଏ ଜଳସେଚନ ବିଧାନ ॥
ଉତ୍ତର ଦେଲେ ଅଧିକାରୀ । ଶୁଣ ସକଳେ କର୍ଣ୍ଣ ଡେରି ॥
ଉଣିଶିଶହ ପଞ୍ଚାଶତ । ସାଲରେ ସର୍ବେ ଦେଖିଛ ତ ॥
ମୋଟେ ଭୂମିର ପରିମାଣ । ଜଳଟି ମାଡୁଥିଲା ଜାଣ ॥
ଯୋଜନା ଫଳ ଶୁଣ ଭାଇ । କେତେ ଅଧିକ ତହୁଁ ହୋଇ ॥
କୋଟିଏ ଶତାନବେ ଲକ୍ଷ । ଗୁଣରେ ବଢ଼ିବ ପ୍ରତ୍ୟକ୍ଷ ॥
ଅଧିକ ହେବ ଉତପନ୍ନ । ଏକଥା ନିଶ୍ଚିତରେ ଘେନ ॥
ଆଜି ଯେ ନଦୀ ବନ୍ଧମାନ । ଯୋଜନା କରୁଛି ନିର୍ମାଣ ॥
ତା ଫଳେ ଯୋଜନାର ଶେଷେ ଜଳ ତ ମାଡ଼ିବ ବିଶେଷେ ॥
ଏକର ପଞ୍ଚାଅଶୀ ଲକ୍ଷ । ଜଳ ଚରିବ ଅଛି ଲକ୍ଷ୍ୟ ॥
ବିଜୁଳି ଶକତି ଆବର । ତହିଁରୁ ହୋଇବ ପ୍ରସାର ॥

ପ୍ରଧାନୋବାଚ

ସାଧୁ ପ୍ରଧାନ ଏହା ଶୁଣି । ଅଧିକାରୀଙ୍କୁ ପୁଚ୍ଛେ ପୁଣି ॥
ଆମ୍ଭ ଦେଶ ତ ନୁହେଁ ସାନ । କେବଳ ନଦୀ ବନ୍ଧମାନ ॥
ଆମ୍ଭ ପ୍ରଦେଶେ ହେଲେ ସବୁ କିଫଳ ଲାଭ ହେବ ବାବୁ ?
ଦେଶ ସୁଖରେ ଥିଲେ ସିନା । ନ ଥିବ କାହାରି ଭାବନା ॥
ସମସ୍ତେ ସୁଖରେ ରହିବା । ଦେଶ ମଙ୍ଗଳ ବଢ଼ାଇବା ॥
ନଦୀ ତ ବହୁ ସ୍ଥାନେ ଅଛି । ବନ୍ଧ କେଉଁଠି ପଡୁଅଛି ॥
ଶୁଣିବା ପାଇଁ ମନ ମୋର । କଥାକୁ ମନରେ ନ ଧର ॥

ସଂସାର ସୁଖେ ଆମ୍ଭେ ସୁଖୀ । ସଂସାର ଦୁଃଖେ ହେବା ଦୁଃଖୀ ॥
ବନ୍ଧ କେବଳ ଏହିଠାରେ । ପଡ଼ିଲେ କି ଲାଭ ତର୍କରେ ?

## ଅଧିକାଷ୍ଟ ଉବାଚ

କହନ୍ତି ହସି ଅଧିକାଷ୍ଟ । ସୁଖୀ ମୁଁ ପ୍ରଶ୍ନ ଶୁଣି କଷ୍ଟ ॥
ଦେଶରେ ବଢ଼ିଲେ ସଂପଦ । ସକଳେ ହୋଇବା ଆନନ୍ଦ ॥
ନୋହିଲେ ଆମ୍ଭେ ସୁଖେ ଥାଇ କି ଲାଭ ସତେ ହେବ ଭାଇ ?
ଆମ୍ଭେ ଖାଇବା, ସୁଖେ ଥିବା । ଭାଇର ମରଣ ଦେଖିବା ॥
ଏ ନୁହେ ଭାରତୀୟ ନୀତି । ଏ ଜାତି ନୁହେଁ ଆତ୍ମ ସାର୍ଥୀ ॥
ଯୋଜନା ବସୁଅଛି ଯାହା । କହୁଛି ଏବେ ଶୁଣ ତାହା ॥
ବହୁତ ସ୍ଥଳେ ବନ୍ଧମାନ । ହେବଟି ଯୋଜାନା ପ୍ରମାଣ ॥
ପଞ୍ଜାବ, ପେପ୍‌ସୁ, ରାଜସ୍ଥାନ । ବାଖରା ନାଙ୍ଗଲ ତା ନାମ ॥
ପଶ୍ଚିମ ବଙ୍ଗ ବହାରରେ । ଦାମୋଦରର ନଦୀ ଜଳେ ॥
ଉତ୍କଳେ ହୀରାକୁଦ ବନ୍ଧ । ଯୋଜନା କରିଛୁ ପ୍ରବନ୍ଧ ॥
ହାଇଦ୍ରାବାଦ ମାନ୍ଦ୍ରାଜରେ । ତୁଙ୍ଗଭଦ୍ରାରେ ବନ୍ଧ ଦେଲେ ॥
ବଢ଼ିବ ସଂପଦ ଦେଶର । କଲ୍ୟାଣ ଅଟେ ଯୋଜନାର ॥
ନନ୍ଦୀ-ଭବାନୀ ବନ୍ଧ ଦେଇ । ମାନ୍ଦ୍ରାଜ ହେବ ମହା ଧନୀ ॥
ପଶ୍ଚିମ ବଙ୍ଗେ ମୟୁରାକ୍ଷୀ । ଯୋଜନା ଜଳେ ଅଛୁ ରଖି ॥
ବୋମ୍ବାଇ ଯୋଜନା ପ୍ରବନ୍ଧ । ନନ୍ଦ ତପ୍ତୀରେ ପଡ଼େ ବନ୍ଧ ॥
ଓଡ଼ିଶା ମାନ୍ଦ୍ରାଜ ମଧ୍ୟସ୍ଥ । ଉଞ୍ଜୁମା କଥା ଜାଣିଛ ତ ॥
ମାଛକୁଣ୍ଡର ନଦୀ ଜଳେ । ବିଜୁଳି ଯୋଜନା ତ ଚଳେ ॥
ଉତ୍ତର ପ୍ରଦେଶର ପାଇଁ । ସାରଦା ଯୋଜନା ଚଳଇ ॥
ପଞ୍ଚବାର୍ଷିକ ଯୋଜନାରେ । ଶେଷ ବରଷ ଦୁଇଟିରେ ॥
ଆହୁରି କଥାଏ କହୁଛୁ । ପାଞ୍ଚ ପ୍ରଧାନ ନଦୀ ବାଛୁ ॥
ବନ୍ଧ ପଡ଼ିବ ଠାବେ ଠାବେ । ନାମ ମୁଁ କହୁଥାଇଁ ଏବେ ॥

ମଧ୍ୟଭାରତ ରାଜସ୍ଥାନ । ଚମ୍ବଲ ଯୋଜନା ତା ନାମ ॥
ବମ୍ବେରେ କୋଏନା ଯୋଜନା ପ୍ରସ୍ତାବ ହୋଇଛି ଠିକଣା ॥
ଆନ୍ଧ୍ରର ଉତ୍ତର ପ୍ରଦେଶେ । ରାଇହାଣ୍ଡର ଯୋଜନା ସେ ॥
ହାଇଦ୍ରାବାଦ ମାନ୍ଦ୍ରାଜରେ । କୃଷ୍ଣା ଯୋଜନା ବୋଲନ୍ତାରେ ॥
ପଞ୍ଚଲ ତିନ ଯୋଜନାର । ପ୍ରଥମ ଭାଗର ବିସ୍ତର ॥
ଯୋଜନା କରୁଛି ଗ୍ରହଣ । ନିଶ୍ଚିତ କଥା ମନେ ଘେନ ॥

ପ୍ରଧାନବାଚ

ପ୍ରଧାନ ଶୁଣି ହସ ହସ । ପଚ୍ଛରେ କରି ହେ ପ୍ରକାଶ ॥
ଯେ କ୍ଷୁଦ୍ର ଜଳସେଚନର । ଯୋଜନା ହୋଇଛି ବିସ୍ତର ॥
କି ରୂପେ ତାହା ଉପକାରୀ । ହୋଇବ କହ ଅଧିକାରୀ ॥

ଅଧିକାରୀ ଉବାଚ

କହନ୍ତି ଅଧିକାରୀ ଶୁଣ । ଏ ସବୁ ସହଯୋଗୀ ଜାଣ ॥
ସୁବିଧା ସ୍ଥଳ ଯହିଁ ଅଛି । ବୃହତ୍ ଯୋଜନା ହେଉଛି ॥
ନଭୂବା କ୍ଷୁଦ୍ର ଯୋଜନାର । ପ୍ରସ୍ତାବ ହୋଇଛି ବିସ୍ତର ॥
କ୍ଷୁଦ୍ର ଯୋଜନା ଫଳମାନ । କହୁଛି ଶୁଣି ହେ ପ୍ରଧାନ ॥
କୋଟିଏ ବାର ଲକ୍ଷ ଭୂମି । ଏକର ତଳେ ପଡ଼ିମାଣି ॥
ଏ କ୍ଷୁଦ୍ର ଜଳସେଚନାରେ । ଫଳବା ହେବା ଗଣନାରେ ॥
ଯୋଜନା କରିଛି ଗ୍ରହଣ । ବିବିଧ ସ୍ଥଳେ କାର୍ଯ୍ୟମାନ ॥
ଚବିଶ ଲକ୍ଷ ଟନ ଶସ୍ୟ । ଅଧିକ ଫଳିବ ଅବଶ୍ୟ ॥
ଯୋଜନା ସଫଳତା ପାଇଁ । ଆମ୍ଭ ସାହାଯ୍ୟ ଲୋଡ଼ା ଭାଇ ॥
ବିସ୍ତରିଛନ୍ତି ସରକାର । ତୁଲାଇବାକୁ କାର୍ଯ୍ୟ ଭାର ॥
ଏଥିକୁ ଲୋଡ଼ା ବହୁଧନ । ତେଣୁ ହେ ଜନସାଧାରଣ—
ଋଣ ରୂପରେ ଧନ ଦେଲେ । ଯୋଜନା ନିର୍ବା ହେବ ଭଲେ ॥
ଅଥବା ଉନ୍ନତି-ମୂଳକ । କର ଦିଅନ୍ତୁ ଦେଶ ଲୋକ ॥

ଦବା ଅଧିକ ଜଳକର । ଏହା ହିଁ ସହଯୋଗ ମୂଳ ॥
ଗଢ଼ିବା ସମବାୟ ସଙ୍ଘ । ସମସ୍ତେ ସାହାଯ୍ୟ କରିବା ।
ଜଳସେଚନ ଯୋଜନାରୁ । ଫଳେ ମିଳିବ ଯେଉଁ ଜଳ ।
ତହିଁର ସତ ଉପଯୋଗ । କଲେ ହୋଇବ ସହଯୋଗ ॥
ଅଥବା ବ୍ୟକ୍ତିଗତ ଭାବେ । ଜଳସେଚନ କାର୍ଯ୍ୟ ଯେବେ ॥
ନିଜ ସୁବିଧା ଅନୁଯାୟୀ । କରି ପାରିବେ କେନ୍ଦ୍ର କେନ୍ଦ୍ର ॥
କୃଷିର ଉନ୍ନତି ହୋଇବ । ଯୋଜନା ଫଳବନ୍ତ ହେବ ।

## ପ୍ରଧାନୋବାଚ

ପଧାନ କହଇ ଏଥର । ଏତ ଆମ୍ଭର ଉପକାର ॥
ଯୁଗ ଯୁଗକୁ କହିଥିବ । ଅଧିକ ଶସ୍ୟ ଉପୁଜିବ ॥
ଆମ୍ଭର ଧନ ଆମ୍ଭେ ଖାଇ । କାଳ କାଟିବା ସୁଖେ ଥାଇ ॥
ଯାହା କହିଲ ଅଧିକାରୀ । ମନ ମାନିଲା ଶୁଣି କରି ॥
ଯେ ଅବା ପାରେ ଯେଉଁ ମତେ ସାହାଯ୍ୟ କରିବା ସମସ୍ତେ ॥

## ଅଧିକାରୀ ଉବାଚ

କହନ୍ତି ଅଧିକାରୀ ନନା । ଆଉ କଥାଏ ଜାଣିଛନା ?
ପାଞ୍ଚଶ ଷାଠିଏ ହଜାର । ଗ୍ରାମ ଅଟଇ ଭାରତର ।
ତିନି ହଜାର ଗ୍ରାମ ପ୍ରାୟ । ପାଉଛନ୍ତି ବିଜୁଳି ସହାୟ ॥
ଅଧିକ ଯୋଗାଇବା ପାଇଁ । ଯୋଜନା ସଂସ୍ଥା ବିଚାରଇ ॥
ହୋଇବ କୃଷିର ଉନ୍ନତି । ଶିଳ୍ପରେ ବଢ଼ିବ ସଂପତ୍ତି ॥
ନୁହଇ ଏତିକ କେବଳ । ବିଦ୍ୟୁତଶକ୍ତିର ଯେ ଫଳ ॥
କହୁଛି ଶୁଣ ହେ ପଧାନ । ଉଜ୍ଜ୍ୱଳ ହେବ ଗ୍ରାମ ମାନ ॥
ସହର ପରି ଗ୍ରାମ ହେବ । ଆମୋଦ ପ୍ରମୋଦ ବଢ଼ିବ ॥
ଏଥି ପାଇଁକି ସରକାର । ଋଣ ଦେବାକୁ ତତପର ॥
ସମବାୟର ସୂତ୍ରେ ନେବେ । ଏ ଋଣ ଗ୍ରାମବାସୀ ସର୍ବେ ॥

ହୋଇଛୁ ଯୋଜନା ବିଧାନ । ଏ କଥା ଜାଣ ହେ ପ୍ରଧାନ ॥
ଶୁଣିଲେ ଏସନ ସଂବାଦ । ସକଳେ ହୋଇଲେ ଆନନ୍ଦ ॥
କହେ ପ୍ରଧାନ ହସି ହସି । ହେ ପ୍ରଭୁ ବଇକୁଣ୍ଠବାସୀ ॥
ତୁମ୍ଭେ ହେ କର ଆଶୀର୍ବାଦ । ସଫଳ ହେଉ ଏ ସମ୍ବାଦ ॥
ଦିଅ ହେ ଜନ-ମନେ ବଳ । ହେ ପ୍ରଭୁ, କରୁଣାସାଗର ॥
ତୁମ୍ଭ ପଦରେ ଚିତ୍ତ ଥାଉ । କର୍ତ୍ତବ୍ୟ ସାଧି ଦିନ ଯାଉ ॥
ସକଳ ଭେଦ ଭାବ ଭୁଲି । ଆନନ୍ଦେ ବୋଲ ହରି ହରି ॥

ଇତି ଶ୍ରୀ ଯୋଜନା ଭାଗବତେ ଜଳସେଚନ ବିଧାନ
କଥନେ ନାମ ଷଷ୍ଠ ଅଧ୍ୟାୟ ।

---

## ସପ୍ତମ ଅଧ୍ୟାୟ

ଦେଉଳେ ଶଙ୍ଖ ବାଜିଲାଣି । ସନ୍ଧ୍ୟା ଆରତି ସରିଲାଣି ॥
ମେଘେ ଖେଳୁଛୁ ଗୋଟା ଜହ୍ନ । ବହୁଛି ଦକ୍ଷିଣା ପବନ ॥
ଗ୍ରାମବାସୀଏ ସତ୍ବରରେ । ବସିଲେ ମଣ୍ଡପ ଆଗରେ ॥
ଗ୍ରାମର ସୁଖ ଦୁଃଖ ଯେତେ । କଏ ସେ କହିଗଲେ କେତେ ॥
ଯାହା ମନକୁ ଯା ପାଇଲା । ସେ କେତେ ପ୍ରକାର କହିଲା ॥
ଭଜନ ଦାସେ ବସିଥିଲେ । ଆରତି ମନ୍ତ୍ର ଜପୁଥିଲେ ॥
କାନେ ତ ସବୁ ପଡ଼ୁଥିଲା । ସନ୍ଧ୍ୟା ତାଙ୍କର ଶେଷ ହେଲା ॥
କହିଲେ ବାବୁ, ସବୁ ଛାଡ଼ । ଘର କଥାକୁ ଆଗେ ବାଡ଼ ।
କୃଷି ଲାଗି ତ ସରକାର । ହୋଇ ଅଛନ୍ତି ଆଗଭର ॥
ଶିଳ୍ପକୁ ଦେଲେ କି ପଟୁଇ । ସେ କଥା ମୁହିଁ ପଚାରଇ ॥
କହନ୍ତୁ ଅଧିକାରୀ ବାବୁ । ଜାଣି ଅଛନ୍ତି ଯାହା ସବୁ ॥

## ଅଧିକାଶ୍ୱ ଉବାଚ

ହସି କହନ୍ତ ଅଧିକାଶ୍ୱ । ବସ୍ତୁର ନୁହଇ ସେପଣ ॥
ଚଉଗଣବେ କୋଟି ଟଙ୍କା । ଏ ପଦେ ହୋଇଅଛୁ ଲେଖା ॥
ଦେଶରକ୍ଷାକୁ ଗୁରୁ ଦେଇ । ବହୁ ପ୍ରକାର ଶିଳ୍ପ ପାଇଁ ॥
ବ୍ୟୟ ହେବଟି ଏ ବାହାରେ । ଖନିଜ ଦ୍ରବ୍ୟ ଉନ୍ନତିରେ ॥
ଆହୁରି କ୍ଷୁଦ୍ର ଶିଳ୍ପ ପାଇଁ । ବ୍ୟବସ୍ଥାମାନ ଅଛୁ ରହି ॥
ବୃହତ ଶିଳ୍ପ ଅନୁଷ୍ଠାନ । ଗଢ଼ିବେ ଶିଳ୍ପପତି ଗଣ ॥
କୃଷି ଶିଳ୍ପର ବିକାଶରେ । ଧନ ଯୋଗାଣ ଏକହରେ ॥
ସମ୍ପଦପର ନୁହେଁ ଜାଣ । କାହିଁ ମିଳିବ ଏତେ ଧନ ?
ଦାସେ ହୋ ମନରେ ବିଚାର । ଖାଇବା କଥା ମୂଳ କର ॥
ଆଗେ ଖାଇଲେ ବାପ ନାମ । କାଳହୁଁ ଏହା ତ ପ୍ରମାଣ ॥
କୃଷି ବିହୀନେ ସର୍ବନାଶ । କାହୁଁ ବା ଜୀବନରେ ଆଶ ?
ଏଣୁ କୃଷିକୁ ଆଗ କରି । ଯୋଜନା ଅଛୁଟି ବିସ୍ତାରି ॥
ଏ ଅର୍ଥେ ବହୁ ପରିମାଣ । ବ୍ୟୟ ହୋଇବ ଏ ପ୍ରମାଣ ॥
ବିଜୁଳି ଶକ୍ତି ପାଇଁ ଯାହା । ଲାଗୁ ହେଉଛୁ ବୁଝ ତାହା ॥
ଶିଳ୍ପ ବିଗରେ ବ୍ୟୟ ସେ ତ । ଏକଥା ନୁହେଁ ଅନୁଚିତ ॥
ବୃହତ ଶିଳ୍ପୋନ୍ନତି ପାଇଁ । ଯାହା ଯୋଜନା ଅଛୁ ହୋଇ ।
ବହୁଳ ଅଂଶଟି ତହିଁରୁ । ବ୍ୟୟିତ ହେବ ସରକାରୁ ॥
ବାକ ଯେ ଧନ ଲୋଡ଼ା ହେବ । ବାହାରୁ ସେଥାଣ୍ଟ ଉଠିବ ॥
ଏ ଭଳି ଆଶା ବାନ୍ଧି ମନେ । ଯୋଜନା ଲଗିଛୁ ତା କର୍ମେ ॥

## ଦାସୋବାଚ

କହଇ ଶ୍ରୀ ଭଜନ ଦାସ । ଶୁଣି ହୋଇଲ ମନ ତୋଷ ॥
କହନ୍ତୁ ଯୋଜନା ମଧ୍ୟରେ । କି ଜାତି ଶିଳ୍ପ କି ପ୍ରକାରେ ॥
କରିବା ପାଇଁ ଉପଜାତ । ବିଧିରେ ରହିଛୁ ସଙ୍କେତ ॥

ମୋ ଜାଣିବାରେ କହୁଅଇଁ । ଖାଦ୍ୟ ପ୍ରସ୍ତୁତ ହେବାପାଇଁ ॥
ଅଛି ଯେତେକ ଯନ୍ତ୍ରପାତି । ହୋଇଲେ ଉତ୍ତମ ନିଯୁକ୍ତି ॥
ଦେଶର ଖାଦ୍ୟପେୟ ପାଇଁ । ଅଭାବ କିଛି ହେବ ନାହିଁ ॥
ବଳିବ ସେଥିରୁ ଆବର । ବିଦେଶେ ହେବ କାରବାର ॥
ତେଣୁ ହେ ନୁହଇ ଯୁକତି । ବଢ଼ାଇବାର ଯନ୍ତ୍ରପାତି ॥
ଯହିଁରୁ ଖାଦ୍ୟପେୟ ଆଦି । ଉତ୍ପନ୍ନ ହେଉଛି ଅବଧି ॥
ଆଉ କାହିଁରେ ସରକାର । ବ୍ୟୟକୁ କରନ୍ତୁ ବିସ୍ତର ॥
ସେ କଥା ଶୁଣିବାକୁ ମନ । କହ ହେ ତହିଁର ବିଧାନ ॥

ଅଧିକାରୀ ଉବାଚ

ଉତ୍ତର ଦେଲେ ଅଧିକାରୀ । ସେ କଥା କହୁଛି ଆତୁର ॥
କୋଟିଏ ଟଙ୍କାରୁ ଅଧିକ । ଏମନ୍ତେ ଯେଉଁ ଶିଳ୍ପଯାକ ॥
ନିଜ ହାତରେ ସରକାର । କରିବେ ତାର କାରବାର ॥
ଇସ୍ପାତ, ସିମେଣ୍ଟ, ଇଞ୍ଜିନ । କଳକବଜା ଟେଲିଫୋନ ॥
ଜାହାଜ, ତାର, କପା, ଲୁଣ । ଏ ଆଦି କାରଖାନାମାନ ॥
ବେତାର ବିଦ୍ୟୁତ ଯୋଜନା । ଯନ୍ତ୍ର ତିଆରି କାରଖାନା ॥
ଊଣିଶିଶହ ଏକାବନ । ସାଲରୁ ହୋଇଲ ଉଆଣ ॥
ଊଣିଶିଶହ ଯେ ଛପନ । ସାଲ ଅବଧି ପରିମାଣ ॥
ଏ ପାଞ୍ଚ ବରଷ କାଳରେ । ଯୋଜନା ଯାହା କରିପାରେ ॥
ତହିଁର ବିବିଧ ବିସ୍ତର । ବିଧାନଛନ୍ତି ସରକାର ॥
ଯୁଦ୍ଧକାଳରେ ଲୋଡ଼ା ଯାହା । ସରକାର ଗଢ଼ାଇବେ ତାହା ॥
ଅନ୍ୟାନ୍ୟ ଶିଳ୍ପ ଯେତେ ଯେତେ ବେସରକାରୀ ଜନ ହାତେ ॥
ଛାଡ଼ି ଅଛନ୍ତି ସରକାର । ଏଥିକୁ ଆନ ନ ବିଚାର ॥

ଦାସୋବାଚ

ବୋଇଲେ ଦାସେ ଏବେ ଶୁଣ ମନେ ସନ୍ଦେହ ରହେ ପୁଣ ॥

ବେସରକାରୀ ପୁଞ୍ଜିପତି । ଶିଳ୍ପ ଗଢ଼ିବେ ହେଲା ମତି ॥
ତେବେ କି ତାଙ୍କ ଇଚ୍ଛାମତେ । ବେଉସା ଚଳାଇବେ ଯେତେ ॥
ତହିଁରେ ଯେବେ କ୍ଷତିହେବ । ଜନତା ସିନା ତା ସହିବ ॥
ଏଥିପାଇଁକି ସରକାର । କି କରିଛନ୍ତି ପ୍ରତିକାର ?
ବୁଝାଇ ଅଧିକାରୀ କହ । ତୁଟିବ ସକଳ ସନ୍ଦେହ ॥

## ଅଧିକାରୀ ଉବାଚ

କହନ୍ତି ଅଧିକାରୀ ହସି । କହୁଛ ବଡ଼ଗଳ ବସି ॥
ଦେଖିଲି ଦାସେ ଫକ୍‌କାଜଣେ । ପଚ୍ଛର ପ୍ରଶ୍ନ ପଟେଣ ପଟେଣ ॥
ଏଥିକୁ ପ୍ରତିକାର ଯାହା । ହୋଇଛି କହୁଛଇଁ ତାହା ॥
ବେସରକାରୀ ଶିଳ୍ପ ପାଇଁ । ନିୟମ କେତେ ଅଛି ହୋଇ ॥
ସର୍କାର ନୁହନ୍ତି ନିଶ୍ଚିନ୍ତ । ସବୁ କଥାରେ ଅଛି ହାତ ॥
ବେସରକାରୀ ହାତେ ଗୁଡ଼ି । ଶୋଇବେ ନାହିଁ ମୁହଁମାଡ଼ି ॥
କର୍ତ୍ତୃତ୍ୱ ରହିବ ଆବର । ତନଖି କରିବେ ସର୍କାର ॥
ବେସରକାରୀ ଶିଳ୍ପପତି । ସାହାଯ୍ୟ ଲଭି ନାନାଜାତି ॥
କରିବେ ଶିଳ୍ପର ଉନ୍ନତି । ଏହିଟି ଯୋଜନାର ଗତି ॥
ବିଦ୍ୟୁତ ଅଳପ ବ୍ୟୟରେ । ଯୋଗାଣ ହେବ ସୁବିଧାରେ ॥
ଆବର କେତେ ଯନ୍ତ୍ରପାତି । କଞ୍ଚା ମାଲର ଯେ ସଂଗତି ॥
ତହିଁରୁ ଆମଦାନୀକର । ଜମିବା ଅଛିଟି ବହୁର ॥
ପ୍ରତି ଶିଳ୍ପକୁ ଦୃଷ୍ଟି ଦେଇ । ଲୋଡ଼ା ହୋଇବ ଯାହା ତହିଁ ॥
ସାହାଯ୍ୟ କରିବେ ବହୁଳ । ଏ ମତି ଅଟେ ସରକାରୀ ॥
ଏଥିକୁ ଆଉ କଥାମାନ । ଯୋଜନା କରିଛି ବିଧାନ ॥
ବିଦେଶୀ ପୁଞ୍ଜିପତି ଯେବେ । ଏ ଦେଶେ ଧନ ଖଟାଇବେ ॥
ଆମ୍ଭ ଦେଶର ରାଜନୀତି । ଆବର ଆମ୍ଭ ଅର୍ଥନୀତି ॥

ଅବସ୍ଥା ବସ୍ତୁର ପ୍ରକାରେ । ଟିକସ ଦେବେ ଯଥାକାଳେ ॥
ହୋଇଲେ ବୃଦ୍ଧି କା ଘଟନ୍ତି । ନ ଥିବ ତହିଁକ ଆପତ୍ତି ॥
ସର୍କାର ଯେବେ କରେ ମନ । ବାହାର ଅନୁଷ୍ଠାନମାନ ॥
ଅବା ବେସରକାରୀ ଯାହା । ନିଜ ଅଧୀନ ହେବ ତାହା ॥
ହେଲେ ଏ ବସ୍ତୁର ସିଦ୍ଧାନ୍ତ । ବିଦେଶୀ ହେବେ ହତସନ୍ତ ॥
ଏମନ୍ତ ମନରେ ସନ୍ଦେହ । ଜାଗିବା ଅସମ୍ଭବ ନୁହେଁ ॥
ଉଜୁଡ଼ି ଯିବ ମୂଳଧନ । ଲଭ ବୁଡ଼ିବ ଅକାରଣ ॥
ବିଦେଶୀ ପୁଞ୍ଜିପତିଗଣ । କାଳେ ସନ୍ଦେହୀ ହେବ ମନ ॥
ଦେଶ ସ୍ୱାଧୀନ ହେବା ପରେ । ଅର୍ଥନୀତିକ ସଙ୍କଟରେ ॥
କେତେକ କାଳ ଗଲା ବହି । କ ହେବ ନ ହେଲା ତା କହି ॥
ବିଭକ୍ତ ହେଲାରୁ ଏ ଦେଶ । ସଙ୍କଟ ଜାଗିଲା ବିଶେଷ ॥
ସେହି କାଳରେ ଶିଳ୍ପ ପ୍ରତି । କ ହେବ ସରକାରୀ ନୀତି ॥
କେହି ତା ବାର ନ ପାଇଲେ । ତେଣୁ ହେ ସନ୍ଦେହେ ଭ୍ରମିଲେ ॥
ଏବେ ସଙ୍କଟ କାଳ ନାହିଁ । ବଦଳି ଗଲାଣି ସେ କାହିଁ ॥
ତେଣୁ ସ୍ପଷ୍ଟରେ ସରକାର । ଦେଶରେ କଲେ ପ୍ରଚାର ॥
ବେସରକାରୀ ଶିଳ୍ପମାନ । ରହିବ ସେହିପରି ଜାଣ ॥
ସେ ସବୁ ଜାତୀୟ ସମ୍ପତ୍ତି । ରୂପରେ ନ ହେବ ଗଣତି ॥
ଏଣୁ ବିଦେଶୀ ପୁଞ୍ଜିପତି । ମନରୁ ଗୁଡ଼ିଲେଣି ଧ୍ରାନ୍ତି ॥
ଏବେ ହେ ଚେଷ୍ଟା ଲଗିଲେଣି । କେତେକ ଚୁକ୍ତି ଭୁଟିଲିଣି ॥
ବିଦେଶୀ ପୁଞ୍ଜିପତି ଦଳ । ଖଟାଇ ନିଜ ପୁଞ୍ଜି ବଳ ॥
ଏ ଦେଶେ ବଣିଜ ଗ୍ଭଳବେ । ସନ୍ଦେହ ମନେ ନ କରିବେ ॥
ଆସିଛି ଏ ଶୁଭ ସମୟ । ବୋଲ ଶ୍ରୀଜଗନ୍ନାଥ ଜୟ ॥
ତାଙ୍କର ଇଚ୍ଛା ପୂର୍ଣ୍ଣ ହେଉ । ତିରଙ୍ଗୀ ଧ୍ୱଜା ଉଡ଼ୁଥାଉ ॥
ସୁଖେ ରହନ୍ତୁ ପ୍ରଜାକୁଳ । ବଢ଼ୁ ହେ ସମ୍ପଦ ପ୍ରଚୁର ॥

ଆନନ୍ଦେ ହରି ହରି କହି । ମଣି ସକଳେ ଭାଇ ଭାଇ ॥
ସାଧିବା ଦେଶ ହିତ ଆଶ । ଧର୍ମରେ କରେଣି ବିଶ୍ୱାସ ॥

ଇତି ଶ୍ରୀ ଯୋଜନା ଭାଗବତରେ ଶିଳ୍ପ ସଂଯୋଜନା
ବର୍ଣ୍ଣନେ ନାମ ସପ୍ତମ ଅଧ୍ୟାୟ ।

---

## ଅଷ୍ଟମ ଅଧ୍ୟାୟ

ଏମନ୍ତେ ସନ୍ଧ୍ୟାକାଳେ ଦିନେ । ଦାସେ ବିଚାର କଲେ ମନେ ॥
ଯିବେ ସେ ଭାଗବତ ଘରେ । କଳପି ଅତ୍ୟନ୍ତ ମନରେ ॥
ମିଶ୍ରଙ୍କୁ ପଚାରିବା ପାଇଁ । କେତେକ କଥା ଅଛି ରହି ॥
ଏତେ ବିଚାରି ଦାସେ ଗଲେ । ମିଳିଲେ ଭାଗବତ ଘରେ ॥
ଯୋଗକୁ ମିଶ୍ରେ ଥିଲେ ତହିଁ । ତା ଦେଖି ହସ ହସ ହୋଇ ॥
ଦାସେ ବୋଇଲେ ଭଲ ହେଲା ତୁମ୍ଭର ସାକ୍ଷାତ ମିଳିଲା ॥
ପଚାରିବାକୁ ଅଛି ମନ । କର ହେ, ସନ୍ଦେହ ମୋଚନ ॥

ମିଶ୍ରୋବାଚ

ହସି କହିଲେ ମିଶ୍ରଜନା । କହିବା ଜାଣିଥିଲେ ସିନା ॥
ଦାସେ ହେ। ତୁମ୍ଭେ ତ ଚତୁର କି ପ୍ରଶ୍ନ କରୁଛ ଏଥର ॥
ଦାସେ କହିଲେ ଶୁଣ ମିଶ୍ରେ । ମନରେ କଥାଟିକ ଆସେ ॥
ଶିଳ୍ପ ଯୋଜନା କଥା ଶୁଣି । ମନେ ମନେ ମୁଁ ହୁଏ ଗୁଣି ॥
ଅନେକ କଳକାରଖାନା । ଯୋଜନା କରୁଛି କଳନା ॥
କିନ୍ତୁ ଗୋଟିଏ କଥା ପାଇଁ । ମୋ ମନେ ଭାବନା ଆସଇ ॥
ଗ୍ରାମରେ ଶିଳ୍ପ ନାନା ଜାତି । କାଳ କାଳର ଅଟେ ଖ୍ୟାତି ॥
ତହିଁରେ କ୍ଷୁଦ୍ର କର୍ମକାର । ଚଳାଏ ଆପଣା ସଂସାର ॥
ଖଟାଇ ତହିଁ ଅଳ୍ପ ଧନ । କରଇ ଜୀବିକା ଅର୍ଜ୍ଜନ ॥

ବସ୍ତ୍ର ଶିଳ୍ପ କାରଖାନା । ହୋଇଛି ଏବେ ତ କଳ୍ପନା ॥
କ ହେବ କ୍ଷୁଦ୍ର ଶିଳ୍ପ ଦଶା । ଭାଙ୍ଗିବ ସିନା ପକ୍ଷୀବସା ॥
ଭାବନ୍ତୁ ତୋଳିବେ ପ୍ରାସାଦ । ଏଥେ ମୁଁ ଗଣଇ ପ୍ରମାଦ ॥
କୁଟୀର ଶିଳ୍ପ ନାଶ ଗଲେ । ଥୋକେତ ମରିଯିବେ ହେଲେ ॥
କେତେ ବା ହୋଇବେ ବେକାର ଏଥକୁ କହ ପ୍ରତିକାର ॥

ମିଶ୍ରୋବାଚ

ମିଶ୍ରେ କହିଲେ ଶୁଣି ଏହା । ହାସେ ନ ଭାବ ମନେ ତାହା ॥
କ୍ଷୁଦ୍ର କୁଟୀର ଶିଳ୍ପ ପାଇଁ । ବସ୍ତ୍ରର ଅନେକ ଅଛଇ ॥
ଗାଆଁ ଗହଳେ କୋଟି କୋଟି ତନ୍ତି କଏ ସେ ଦେବ କାଟି ?
କ୍ଷେତରେ ଖଟି ଛଅ ମାସ । କୃଷୀଏ ମାରନ୍ତି ନିଃଶ୍ୱାସ ॥
ବସନ୍ତି ନିଷ୍କର୍ମା ସେ ହୋଇ । କର୍ମ ଯୋଗାଣ କିଛି ନାହିଁ ॥
ଏ ସର୍ବେ ସହଜେ ଖଟିବେ । ସୁଖରେ କୁଟୁମ୍ବ ପୋଷିବେ ॥
ତନ୍ତିଙ୍କ ଅଛନ୍ତି ବନ୍ଧୁର । ଗ୍ରାମେ କୁଟୀର ଶିଳ୍ପଧାର ॥
ଏଥକୁ ଚଳିବ ଉଦ୍ୟମ । ଗବେଷଣାର କେନ୍ଦ୍ରମାନ ॥
ବିବିଧ ସ୍ଥାନରେ ବସିବ । ଶିଳ୍ପର ବିକାଶ ଲଭିବ ॥
ଆଧୁନିକ ସମବାୟ ସଭା । ଗଢ଼ି ଯୋଜନା ହେବ ନଭା ॥
କୁଟୀର ଶିଳ୍ପଜାତ ଦ୍ରବ୍ୟ । ଉଚିତ ଦରେ ବିକ୍ରୀ ହେବ ॥
ତନ୍ତିଙ୍କ ବ୍ୟବସାୟ କ୍ଷେତ୍ର । ଖୋଜିବ ସମବାୟ ସୂତ୍ର ॥
କିଣିବେ ଉଆଗ ଦରରେ । ଲାଭ କରିବେ ବଣିକରେ ॥
ବୃହତ ଶିଳ୍ପରୁ ଉତ୍ପନ୍ନ । ହୋଇବ ଯେଉଁ ଦ୍ରବ୍ୟମାନ ॥
ତା ତୁଲେ କୁଟୀର ଶିଳ୍ପର । ପଡ଼ିଯେ ଗତି ଭୟଙ୍କର ॥
ଏଥକୁ ଉଭୟ ପ୍ରକାର । ଶିଳ୍ପର ଚଳିବ ବେଭାର ॥
ସେ ଭଳି ସ୍ଥୂଳ ବସ୍ତ୍ର ହେବ । ଜାହାର ଅସଳ ନୋହିବ ॥
ବୃହତ ଶିଳ୍ପଦ୍ରବ୍ୟ ଦରେ । ଟିକସ ବସାଇ ବଧିରେ ॥

କୁଟୀର ଶିଳ୍ପ ଦ୍ରବ୍ୟ ପ୍ରତି । ସାହାଯ୍ୟ ଦେବା ହେବ ମାତି ॥
ପୁଣି ଏ ରାଜ୍ୟ ସରକାରେ । ସମସ୍ତ ଲୋଡ଼ା ଅନୁସାରେ ॥
କୁଟୀର ଶିଳ୍ପ ଦ୍ରବ୍ୟମାନ । ଅଧିକେ କଣିବା ପ୍ରମାଣ ॥
ଦେଖୁଛ ଅନୁଷ୍ଠାନମାନ । ଗଢ଼ାହେଉଛି ଦିନୁ ଦିନ ॥
ହାତ ତନ୍ତର ବୁଣା କାର୍ଯ୍ୟ । ତହିଁରେ ରହିବା ନିଧାର୍ଯ୍ୟ ॥
ଆହୁରି ହସ୍ତକର୍ମୀମାନ । ଉନ୍ନତି ଲାଗି ଦେଇ ଧ୍ୟାନ ॥
ବହୁଧା ଅନୁଷ୍ଠାନ କେତେ । ଗଠିତ ହୁଏ ଏହିମତେ ॥
ଦାସେ ହୋ ଚିନ୍ତା ଦୂର କର । ଉନ୍ନତି କୁଟୀର ଶିଳ୍ପର ॥
ଅବଶ୍ୟ ହେଉଛି ବିଧାନ । ଏକଥା ସ୍ଥିରଭାବେ ଜାଣ ॥
ଶୁଣି ଯେ ଗ୍ରାମବାସୀ ଥିଲେ । ଯୋଜନା ସଂସ୍ଥା ପ୍ରଶଂସିଲେ ॥
ଡାକିଲେ ଆହେ ଆଦିମୂଳ । ଭାବନା କରାଅ ସଫଳ ॥
ତୁମ୍ଭ ନାମରେ ଉଡ଼ୁ ବାନା । ସକଳ ତୁମ୍ଭର କରୁଣା ॥

ଇତି ଶ୍ରୀ ଯୋଜନା ଭାଗବତେ କୁଟୀର ଶିଳ୍ପ ବିଧାନ
କଥନେ ନାମ ଅଷ୍ଟମ ଅଧ୍ୟାୟ ।

---

## ନବମ ଅଧ୍ୟାୟ

ପଶ୍ଚିମେ ତପନ ବୁଡ଼ିଲେ । ଗୋଠରୁ ଗୋଧନ ଫେରିଲେ ॥
ହଳ ମେଲାଣି କରି ଚାଷୀ । ଘରେ ବାହୁଡ଼େ ହସି ହସି ॥
ସଞ୍ଜ ଜଳିଲା ଦ୍ୱାରେ ଦ୍ୱାରେ । ଆଳତି ବଢ଼ିଲା ମନ୍ଦିରେ ॥
ଗାଆଁ ମଝିରେ ଗାଦିଘର । ପ୍ରବେଶି ଗ୍ରାମବାସୀ ଦଳ ॥
କରନ୍ତି ପୁରାଣ ଶ୍ରବଣ । ସକଳେ ହୋଇ ଏକମନ ॥
ପଧାନେ ପ୍ରବେଶ ହୋଇଲେ । ମିତ୍ରଙ୍କୁ ଦେଖି ଓଳଗିଲେ ॥
ରାତି ପ୍ରହରେ ଆସିହେଲା । ବୁଦାରେ ଶିଆଳ ରାବିଲା ॥

ପୁରାଣ ପାଠ ଶେଷକରି । ମିଶ୍ରଙ୍କୁ ସର୍ବେ ଗଲେ ଘେରି ॥
ପ୍ରଧାନେ ଆଗୁଆ ହୋଇଣ । ମିଶ୍ରଙ୍କୁ ପଚାରିଲେ ପୁଣ ॥

ପ୍ରଧାନୋବାଚ

ଆହେ ମିଶ୍ରେ ମୁଁ ଶୁଣୁଅଛି । ଯେ ଧନ ବ୍ୟବସ୍ଥା ହୋଇଛି ॥
ଯୋଜନା ଲାଗି ବ୍ୟୟ ହେବ । ଅଧରୁ ବେଶୀ ଚାଲି ଯିବ ॥
ଉନ୍ନତି ହେବ ରେଲବାଇ । ଏ କଥା ହୁଏ କାହିଁପାଇଁ ?

ମିଶ୍ରୋବାଚ

ମିଶ୍ରେ କହିଲେ ପ୍ରଧାନେ ହୋ । ଏକଥା ନ ବୁଝୁଛ କାହୋ ॥
କୃଷି ଶିଳ୍ପର ସମୁନ୍ନତି । ପାଇଁ ତ ରେଲ ଲୋଡ଼ା ଅତି ॥
ଗତ ଯୁଦ୍ଧରେ ରେଲବାଇ । ବହୁତ କ୍ଷତି ସହିଥାଇ ॥
ଅବଧି ସେ କ୍ଷତିପୂରଣ । ହୋଇ ତ ପାରିନାହିଁ ଜାଣ ॥
ସେ କ୍ଷତି ପୂରଣ ହୋଇବ । ଆବର ଉନ୍ନତି ଲଭିବ ॥
ଏଥିକୁ ହେତୁ କରି ମନ । ଲୋଡ଼ା ହୋଇବ କେତେଧନ ॥
ଟ୍ରେନରେ ଯିବା ଆସିବାର । କଷ୍ଟଟି ଦେଖୁଛ ଏଥର ॥
ବଢ଼ିଲେ ଲୋକ ଗତାଗତ । ପଦାର୍ଥ ବୋଝ ବଢ଼ିବ ତ ॥
ସେ ସବୁ ନିଅ ଆଣ ପାଇଁ । ଉନ୍ନତ ହେବ ରେଲବାଇ ॥
ତେଣୁ ସେ ବହୁତ ଉନ୍ନତି । ଲୋଡ଼ା ତ ପଡ଼ୁଛି ସଂପ୍ରତି ॥
ଭିନ୍ନ ବାହାରୁଁ ଅର୍ଥ ନେଇ । ବଢ଼ାଯାଉଛି ରେଲବାଇ ॥
ଏଥର ଦେଶରେ ଆମ୍ଭର । ଇଞ୍ଜିନ ହୋଇବ ତିଆର ॥

ପ୍ରଧାନୋବାଚ

ପ୍ରଧାନ କହେ ହସି ହସି । ସେ କଥା ଶୁଣିଥିଲି କାଲି ॥
ଟାଟା ଇଞ୍ଜିନ କାରଖାନା । ଚିତ୍ତରଞ୍ଜନ ବୋଲିଣ ନାଁ ॥
ଦୁଇଟି କାରଖାନା ହେବ । ଇଞ୍ଜିନ କେତେ ଯୋଗାଇବ ॥
ଏଥିରୁ ଯାହା କମ୍ତି ହେବ । ଲୋଡ଼ାକୁ ନିଶ୍ଚେ ପଡ଼ିବ ॥

ଜଣାରେ ଶହେ ନବେକୋଟି । ଇଞ୍ଜିନ ଲୋଡ଼ା ପଡ଼ୁଅଛି ॥
ତହିଁରୁ ପ୍ରତ୍ୟେକ ବରଷ । ଦେଢ଼ଶ ଯୋଗାଇବ ଦେଶ ॥
ବାକି ଆସିବ ବିଦେଶରୁ । ଶୁଣିଛି ମୁଁ ଲୋକମୁଖରୁ ॥

ମିଶ୍ରୋବାଚ

ମିଶ୍ରେ କହିଲେ କଥା ସତ । ପ୍ରଧାନେ ସବୁ ଜାଣିଛ ତ ॥
ତୃତୀୟ ଶ୍ରେଣୀ ଯାତ୍ରୀପାଇଁ । ବେଶୀ ବ୍ୟବସ୍ଥା ଅଛି ହୋଇ ॥
ଏଥିକୁ ଯେଉଁ ପରିମାଣ । ବ୍ୟୟର ବ୍ୟବସ୍ଥା ପ୍ରମାଣ ॥
ବହୁଳ ଅଂଶ ତହୁଁ ନେଇ । ତୃତୀୟ ଶ୍ରେଣୀ ଯାତ୍ରୀପାଇଁ ॥
ବ୍ୟୟ ହୋଇବ ଏହି କଥା । ଯୋଜନା କରିଛି ମସୁଧା ॥
ଜାହାଜ ହୋଇବ ଗଠନ । ସେ ପକ୍ଷେ ଲୋଡ଼ା ବହୁଧନ ॥
ବିଭକ୍ତ ହେବାରୁ ଭାରତ । କରାଚି ବନ୍ଦର ଗଲା ତ ॥
ସେ ଥିଲା ପ୍ରଧାନ ବନ୍ଦର । ବନ୍ଦ ହୋଇଲା କାରବାର ॥
ଏବେ ତ ବୋମ୍ବାଇ ବନ୍ଦର ହୋଇଛି କାରବାର ସ୍ଥଳ ॥
ଅଧିକ ଭିଡ଼ ପଡ଼ୁଅଛି । ତେଣୁ ଯୋଜନା କରୁଅଛି ॥
କାଣ୍ଡଲା ନାମକ ବନ୍ଦର । ଉନ୍ନତ ହୋଇବ ଏଥର ॥
ଏହା ଫଳରେ ବହୁ ଦ୍ରବ୍ୟ । ବିଦେଶେ ରପ୍ତାନି ସମ୍ଭବ ॥
ମୋଟର ତେଲ ବିଶୋଧନ । ପାଇଁ କି ହେଉଛି ବିଧାନ ॥
ବମ୍ବେ ବିଶାଖପାଟଣାରେ । ଶୋଧନ ଯୋଗାଣ ଆଶାରେ ॥
ବିଶୋଧନର କାରଖାନା । ବ୍ୟବସ୍ଥା କରୁଛି ଯୋଜନା ॥

ପ୍ରଧାନୋବାଚ

ଉତ୍ତର ପ୍ରଧାନ କହଇ । ଏସବୁ କଥା ଶୁଣିଲଇଁ ॥
ମିଶ୍ରେ ହୋ, ଯେତେ ଜାଣିଥିବ ମୁଁ ଯାହା ପଶ୍ନରେ କହିବ ॥
ଗାଆଁ ଗଣ୍ଡାକୁ ଦେଖ ଥରେ । ପଥ ଘାଟର ଅଭାବରେ ॥
ଉନ୍ନତି ନୁହଇ ସମ୍ଭବ । ଏହା ପାଇଁକି କଣ ହେବ ?

ଆମ୍ଭେ ସକଳେ ଗ୍ରାମବାସୀ । ତିଆରି କରିବୁ ମିଳିମିଶି ॥
ତଥାପି ସାହାଯ୍ୟ ଲୋଡ଼ା ତ । ବାହାର ମିଛ କି ଏ ସତ ॥
ଏ କଥା ଅଟଇ ପ୍ରତ୍ୟକ୍ଷ । ଯୋଜନା କରିଛୁ କି ଲକ୍ଷ୍ୟ ?

## ମିଶ୍ରୋବାଚ

ମିଶ୍ରେ କହିଲେ ଶୁଣ ଶୁଣ । ତହିଁକି ହୋଇଛି ବିଧାନ ॥
ଏତିକି ନୁହେଁ ହୋ ପଧାନ । ଆହୁରି ଅଛି କର୍ମମାନ ॥
ଗ୍ରାମଗୋଷ୍ଠୀର ଯୋଜନାରେ । ବିଶେଷ ଲକ୍ଷ୍ୟ ଏହିଠାରେ ॥
ନିଜ ଇଚ୍ଛାରେ ଲୋକେ ଯେବେ ଘାଟ, ସଡ଼କ ନିର୍ମାଣିବେ ॥
ତହିଁକି ଆମ ସରକାର । ସାହାଯ୍ୟ ଦେବେକି ମୁକର ॥
ଏଥିପାଇଁକି ବହୁଧନ । ଯୋଜନା କରିଛି ବିଧାନ ॥
ଆହୁରି ବଡ଼ ପଥ, ଶଙ୍ଖ । ଯୋଜନା କରିଅଛି ଲେଖ ॥
ସାମ୍ରାଜ୍ୟ ଯେ ରାଜ୍ୟ ଅଛଇ ତିନି ଶ୍ରେଣୀରେ ବଣ୍ଟାହୋଇ ॥
ସଡ଼କ ହୋଇବ ତିଆରି । ବ୍ୟୟ ବହିବ ସରକାରି ॥
ଗାଆଁ ଗଣ୍ଡାକୁ ପଥ ହେବ । ବେଉସା ସହଜେ ଚଳିବ ॥
ତୁମ୍ଭେ ଆମ୍ଭେ ହୋ ଗତାଗତ ହୋଇବା ସୁଖେ ସନ୍ତତ ॥
ପାଞ୍ଚବରଷ ମଧ୍ୟେ ଯାହା । ଆଶା ରହିଛି କହେଁ ତାହା ॥
ତେୟାଳିଶଟି ବଡ଼ ପୋଲ । ପ୍ରସ୍ତୁତ ହେବା ନୁହେଁ ଗେଲ ।
ଦୁଇ ହଜାର ଦୁଇଶତ । ମାଇଲ ତିଆରିବେ ପଥ ॥
ଏ ତ ନୁହଇ ଖେଳଘଇ । ଅର୍ଥର ବେଭାର ସକଳ ॥
ଦେଶଭାଇଙ୍କ ସହଯୋଗ । ଏଥିପାଇଁ କି ଲୋଡ଼ା ଆଗ ॥
ଦେଶର ବିବିଧ ଉନ୍ନତି । ହୋଇଛି ଯୋଜନାର ନୀତି ॥
ତିନି ଭାଗରୁ ଭାଗ ଦୁଇ । ଯୋଜନା କାଳେ ପୂର୍ତ୍ତି ପାଇଁ ॥
ବହିଉଛନ୍ତି ସରକାର । ଏଥକୁ ସହଯୋଗ ସାର ॥
ଶୁଣିଣ ଏସନ ବଚନ । ସକଳେ ହରଷିତ ମନ ॥

ପୁଣିହିଁ କହଇ ପଧାନ । ଆଉ କଥାଏ ଅଛି ମନ ॥
କାଲି ଆସିଲେ ପଣ୍ଡିତବା । ସ୍ନେହ ହେଲାଣି ଗଲା ଯିବା ॥
ସକଳେ ଦେଲେ ହରିବୋଲ । ଉଠିଲେ ସଭାରୁ ଚଞ୍ଚଳ ॥

ଇତି ଶ୍ରୀ ଯୋଜନାଭାଗବତେ ଯୋଗାଣ ଯାନବାହନ
ସଂବାଦ କଥନେ ନାମ ନବମ ଅଧ୍ୟାୟ ।

---

## ଦଶମ ଅଧ୍ୟାୟ

ମିଶ୍ରଙ୍କ ଚଉପାଢ଼ୀଠାରେ । ଆଜ ସକଳେ ଠୁଳ ହେଲେ ॥
ମିଶ୍ରଙ୍କୁ ଜ୍ୱର ଅଛି ହୋଇ । ଟୁଙ୍ଗୀକୁ ଯିବା ବଳ ନାହିଁ ॥
ପୁରାଣ ପାଠ ଶେଷ କରି । ସାଧୁ ପଧାନ ଆଦି କରି ॥
ମିଶ୍ରଙ୍କୁ ଘେରିଣ ବସିଲେ । ଆଗେ କୁଶଳ ପୁଚ୍ଛାକଲେ ॥
ମିଶ୍ରେ କହନ୍ତି ଭାବ ନାହିଁ । ବସ ସକଳେ ଯିବ କାହିଁ ?
କହିବା ଯାହା ପଣ୍ଡିତବ । ମନଟା ଆନମନା ହେବ ॥

ପଧାନୋବାଚ

ପଚାରେ ତାହାଙ୍କୁ ପଧାନ । ହେ ମିଶ୍ରେ, କହ ଯାହା ଜାଣ ॥
ଭାରତେ ଗୃହର ଅଭାବ । କାହିଁକି ହେଉଛି କହିବ ॥
ଯେଉଁ ପ୍ରଦେଶେ ଶୁଣ ଯାଇଁ । କହନ୍ତି ଗୃହ ମିଳୁନାହିଁ ॥
କେଉଁ କାରଣୁ ହୁଏ ଏହା । ଯୋଜନା ଭାବଇ କି ତାହା ?

ମିଶ୍ରୋବାଚ

ମିଶ୍ରେ ହୋଇଣ ହସ ହସ । କହିଲେ ହେଉ ବସ ବସ ॥
କହିବା ଏଥିର କାରଣ । ଶୁଣ ସକଳେ ଦେଇ ମନ ॥
ଆଗୁଁ ତିରିଶ ବର୍ଷ ହେଲା । ଜନମ ବହୁତ ବଢ଼ିଲା ॥
ଯେ ସ୍ଥାନେ ଥିଲେ ପାଞ୍ଚ ଜଣ । ପଚିଶ ଜଣେ ହେଲେ ପୂର୍ଣ୍ଣ ॥

ଘରର ଗୃହବଧା ବଢ଼ିଲା । କ୍ରମଶଃ ଘର ନ ଅଣ୍ଟିଲା ॥
ଆଦୁର ଅଛଇ କାରଣ । ଗାଁଆ ଗହଳୁ ବହୁଜନ ॥
କେତୁ ଗ୍ରାମର କେ କେଉଁସା । ସୁବିଧା ଲାଭ କରି ଆଶା ॥
ଗ୍ଲଲି ଆସନ୍ତି ସହରକୁ । ଭଲରେ ରହି ଚଳିବାକୁ ॥
ଘର ଅଭାବ ସହରରେ । ହୋଇଲା ତେଣୁ ଯୁକ୍ତରେ ॥
ହୋଇଲା ଅଭାବ ଆବର । ପଦାର୍ଥ ତୋଳିବାକୁ ଘର ॥
ଜନିଷପତ୍ର ନ ମିଳନ୍ତେ । ଘର ତୋଳିବେ କେଉଁମନ୍ତେ ?
ନୂଆ ଘର ତ ତୋଳା ନାହିଁ । ଘର ଅଭାବ ଏଥିପାଇଁ ॥
ଯେମନ୍ତେ ଗତ ଯୁଦ୍ଧ ହେଲା । ସମସ୍ତ ଅଭାବ ପଡ଼ିଲା ॥
ତା ପଛେ ଭାଗ ଭାଗ ହୋଇ । ଫାଟିଲା ଏ ଭାରତ ଭୂଇଁ ॥
ଆଶ୍ରୟ ଆଶାରେ ଅନେକ । ଭାରତେ ପଶିଲେ ଲୋକ ॥
ତାଙ୍କର ବସବାସ ପାଇଁ । ଆଜ ବା ଅଛି ଘର କାହିଁ ॥
ତେଣୁ ହେ ଘରର ଅଭାବ । ବଢୁଛି କେବେ କମ ହେବ ॥

ଦାସୋବାଚ

ଯାହା ତ ହେବାର ହୋଇଛି । ଉନ୍ନତିକ ପ୍ରତିକାର କହୁ ॥
କରୁଛନ୍ତି କି ସରକାର । ମିଶ୍ରେ ହୋ ! ବର୍ଣ୍ଣନା ତା କର ॥
ବଢ଼ି ତ ଗ୍ଲଲଛି ଫସାଦ । ମୁକ୍ତି ବୋଧକ ବଳ କାର ॥
ଲୋକେ ହେବାକୁ ଥଇଥାନ । ହେଉଛି କଅଣ ବିଧାନ ?
ପଧାନଠାରୁ ଏହା ଶୁଣି । ମିଶ୍ରେ ଉତ୍ତର ଦେଲେ ପୁଣି ॥

ମିଶ୍ରୋବାଚ

ଶୁଣ ହେ ପଧାନେ କହୁଛି । ତା ପ୍ରତିକାର ଯା' ହେଉଛି ॥
ଦୁର୍ଭାଗ୍ୟ ହୋଇଲା ଏମନ୍ତ । ଭାରତ ହେଲା ଦ୍ଵିଖଣ୍ଡିତ ॥
ବହୁତ ପାକିସ୍ଥାନବାସୀ । ଆଶ୍ରୟପ୍ରାର୍ଥୀ ରୂପେ ଆସି ॥

ମିଳିଲେ ଭାରତବର୍ଷରେ । ଏ ଦେଶେ ଆଶ୍ରୟ ଆଶରେ ॥
ସେମାନଙ୍କର ଥଇଥାନ । କରିବା ପାଇଁ କି ବିଧାନ ॥
ଆମ୍ଭ ଭାରତ ସରକାର । ବସାଇ ଗ୍ରାମ, ତୋଳି ଘର ॥
ଆଶ୍ରୟ ଦେଲେ ସ୍ଥାନେ ସ୍ଥାନେ । ସୁଖରେ ରହିଲେ ସେମାନେ ॥
ପଶ୍ଚିମ ପାକିସ୍ଥାନବାସୀ । ଭାରତେ ଯେତେ ଥିଲେ ଆସି ॥
ତାହାଙ୍କ ପାଇଁ ଲକ୍ଷେ ଘର । ତୋଳିଲେ ଆମ୍ଭ ସରକାର ॥
ପୂର୍ବ ପାକିସ୍ଥାନ ଗୁଡ଼ି । ଆସିଲେ ଯେ ଲୋକେ ବାହାରି ॥
ଦେଢ଼ ଲକ୍ଷେକ ଘର ତୋଳି । ରଖିଲେ ତାହାଙ୍କୁ ସମ୍ଭାଳି ॥
କେନ୍ଦ୍ର ପ୍ରଦେଶ ସରକାର । ଖରଚ କରିଲେ ବିସ୍ତର ॥
ବମ୍ବେ, ଉତ୍ତର ସରକାର । ତୋଳି ଅଛନ୍ତି ବହୁଘର ॥
ସ୍ଥାନୀୟ ଅଭାବ ହରଣ । କରିଛି ଏହି ଗୃହମାନ ॥
ଅଳପ ଆୟ କରୁଛନ୍ତି । ଏପରି ଅନେକ ଅଛନ୍ତି ॥
ଗୃହ ନିର୍ମାଣେ ନାହିଁ ଧନ । ଯୋଜନା କରିଛି ବିଧାନ ॥
ତାଙ୍କୁ ଯୋଗାଇଦେବ ଘର । କାର୍ଯ୍ୟ ହେଲାଣି ଆରମ୍ଭର ॥
ଆହୁରି ଶ୍ରମିକଙ୍କ ପାଇଁ । ଗୃହ ନିର୍ମାଣ ହେଉଛଇ ॥
ଶିଳ୍ପ ବିକାଶ ଲାଗି ଘର । ନିର୍ମାଣ ହେଉଛି ଆବର ॥
ଏ ସଂସ୍ଥା ପାଇଁ ଋଣଦାନ । ଯୋଜନା କରିଛି ବିଧାନ ॥
ପଲ୍ଲୀର ମଙ୍ଗଳ ବିଧାନେ । ଯୋଜନା ରଖିଅଛି ଧ୍ୟାନେ ॥
ଉନ୍ନତ ହେବ ପଲ୍ଲୀ ଘର । ସାହାଯ୍ୟ ଦେବ ସରକାର ॥
ପ୍ରତି ପ୍ରଦେଶେ ଏ ବିଧାନ । ଚାଲୁ ହେଲାଣି ଦା'ସେ ଜାଣ ॥
ଜଳ ଯୋଗାଣ, ନିଷ୍କାସନ । ଗ୍ରାମ ମଧ୍ୟସ୍ଥ ପଥମାନ ॥
ପ୍ରଦେଶ ସରକାରମାନେ । ବିସ୍ତର କରି ସ୍ଥାନେ ସ୍ଥାନେ ॥
ପ୍ରସ୍ତୁତ କରିବାର ପାଇଁ । ଯୋଜନା ବିଧାନେ ଲେଖଇ ॥
ଉନ୍ନତ ହେବ ଗ୍ରାମମାନ । ତହିଁକି ପାଣ୍ଠି ଅଛି ଭିନ୍ନ ॥

ଦାସୋବାଚ

ଦାସେ କହିଲେ ଭଲ ହେବ । ଗ୍ରାମବାସୀଙ୍କ ଦୁଃଖ ଯିବ ॥
କୃପା କରନ୍ତୁ ଭଗବାନ । ପୂରଣ ହେଉ ମନସ୍କାମ ॥
ବିରଙ୍ଗ ବାନା ଉଡ଼ୁଥାଉ । ଭାରତ ଯୁଗେ ଯୁଗେ ରହୁ ॥
ଆନନ୍ଦେ ହରିବୋଲ ଦେଇ । କର୍ମରେ ଲାଗିପଡ଼ ଭାଇ ॥
କର୍ମର ମୂଳେ ଏ ଜଗତ । ସାହା ହୋଇବେ ଜଗନ୍ନାଥ ॥

ଇତି ଶ୍ରୀ ଯୋଜନା ଭାଗବତେ ଗୃହ ନିର୍ମାଣ ବ୍ୟୟ
ସମ୍ବାଦ କଥନେ ନାମ ଦଶମ ଅଧ୍ୟାୟ ।

---

## ଏକାଦଶ ଅଧ୍ୟାୟ

ଅପର ଦିନ ସର୍ବେ ଆସି । ସଞ୍ଜବେଳରୁ ଗଲେ ବସି ॥
ମିଶ୍ରଙ୍କ ଘରଠାରେ ଯାଇ । ପ୍ରଧାନ ସର୍ବୋକା ପୁଚ୍ଛଇ ॥
ଆସିବ ନାହିଁ କି ଭାଇନା । ପୁରାଣ ଶୁଣି ଯିବା କିନା ?
ମିଶ୍ର କହିଲେ ଆଜ ଭାଇ । ଅଧିକାରୀଙ୍କୁ ପଠିଆଇ ॥
ରହିଲି ଘରଠାରେ ମୋର । ଜାଣ ତ ଅସୁସ୍ଥ ଶରୀର ॥
ସକଳ ମୂଳେ ସ୍ୱାସ୍ଥ୍ୟ କଥା । ଅଧିକାରୀ ଏ କହିବେ ତା ॥
ସ୍ୱାସ୍ଥ୍ୟଟି ଅଟେ ବଡ଼ ଧନ । ତା ବିନେ ସବୁ ଅକାରଣ ॥
କି ହେବ ଧନ ଜନ ଥାଇ । ଶରୀର ଯେବେ ସୁସ୍ଥ ନାହିଁ ॥
କିଏ ବା ସେ ଧନ ଭୁଞ୍ଜିବ । କିଏ ସେ ସଉଖ୍ୟ ଭୋଗିବ ?
ଆଜ ସଭାରେ ଅଧିକାରୀ । କହିବେ ସକଳ ବିସ୍ତାରି ॥
ଯାଅ ଶୁଣିବ ଦେଇ ମନ । ଏଥିକୁ ଯୋଜନା ପ୍ରଧାନ ॥
ଶୁଣି ପ୍ରଧାନେ ଚାଲିଗଲେ । ସଭାରେ ଯାଇ ପ୍ରବେଶିଲେ ॥
ଆସି ଅଛନ୍ତି ଅଧିକାରୀ । ସକଳେ ବସିଛନ୍ତି ଘେରି ॥
ଅଧିକାରୀ ଏ ତୋଷମନେ । କହନ୍ତି ଶୁଣ ଭାଇମାନେ ॥

## ଅଧିକାରୀ ଉବାଚ

ପ୍ରଧାନ ଅଟଇଟି ଜଳ । ନିର୍ମ୍ମଳ ଜଳ ସ୍ୱାସ୍ଥ୍ୟ ମୂଳ ॥
ତେଣୁ କେନ୍ଦ୍ରରୁ ମିଳେ ଋଣ । ହୋଇବ ଜଳର ଯୋଗାଣ ॥
ତଥାପି ଜନସାଧାରଣ । ଏଥି ଉଦ୍ୟମେ ଦେଇ ମନ ॥
କରିବେ ଯେବେ ସହଯୋଗ । ସଫଳ ହୋଇବ ଉଦ୍‌ଯୋଗ ॥
ଧନ ବା ଶ୍ରମ ରୂପେ ଯେବେ । ଜନତା ସହାୟ ହୋଇବେ ॥
କାର୍ଯ୍ୟଟି ହୋଇବ ସୁଲଭ । କଲ୍ୟାଣ ଅଟଇ ଦୁର୍ଲ୍ଲଭ ॥
ଜାଣ ତ ମେଲେରିଆ ଜ୍ୱର । ଦେଶରେ ହେଉଛି ପ୍ରବଳ ॥
ହାଡ଼ ମାଂସ କରି ସାର । ଦେଶକୁ କରେ ଛାରଖାର ॥
ଏଣୁ ହେ ଆମ୍ଭ ସରକାର । ବିଚାର କରିଛନ୍ତି ସ୍ଥିର ॥
ଗ୍ରାମ ସହର ଯେତେ ଥିବ । ଡି.ଡି.ଟି. ତହିଁ ସିଞ୍ଚାଯିବ ॥
କ୍ୱଇନାଇନ ବଣ୍ଟା ହେବ । ମାଲେରିଆର ଜଡ଼ ଯିବ ॥
ଶହେ ପଚାଶ ଗୋଟି ଦଳ । ଘେନ ପ୍ରଦେଶ ସରକାର ॥
ଏ କର୍ମ୍ମ ଆରମ୍ଭ କରିବେ । କେନ୍ଦ୍ର ସର୍କାର ଦୃଷ୍ଟି ଦେବେ ॥
ଡି.ଡି.ଟି. ଉତ୍ପାଦନ ପାଇଁ । ସର୍କାର ବ୍ୟବସ୍ଥା କରଇ ॥
ସୁଲଭ ଦରରେ ମିଳିବ । ଶୀଘ୍ର ଏ କଥା ସମ୍ଭବ ॥
ପ୍ରଦେଶ ସରକାରମାନ । ଦେବେଟି ପାଞ୍ଚକୋଟି ଧନ ॥
ଉଦ୍‌ବୃତ କେନ୍ଦ୍ର ସରକାର । ଯୋଗାଇ ଦେବା ଅଟେ ସ୍ଥିର ॥

## ପଧାନୋବାଚ

ଆନନ୍ଦେ ପଧାନ କହଇ । ଏ ସବୁ କଥା ଶୁଣିଲଇଁ ॥
ଏବେ ହୋ ଦେଖ ଅଧିକାରୀ । ଯକ୍ଷ୍ମା ତ କଡ଼ିଗଲା ଭାରି ॥
ବରଷ ପ୍ରତି ପାଞ୍ଚଲକ୍ଷ । ଏ ରୋଗେ ମରନ୍ତି ପ୍ରତ୍ୟକ୍ଷ ॥
ତହିଁକି କେଉଁ ପ୍ରତିକାର । ଯୋଜନା କରିଛ ବିସ୍ତାର ॥

## ଅଧିକାରୀ ଉବାଚ

ଉତ୍ତରେ ଅଧିକାରୀ ଭାଇ । କହନ୍ତି ପଧାନେ ବୁଝାଇ ॥
ବି.ସି.ଜି. ଟିକାଟି ପ୍ରଧାନ । ଏ ରୋଗ ପ୍ରତିକାର ଜାଣ ॥
ଆନ୍ତର୍ଜାତିକ ସ୍ୱାସ୍ଥ୍ୟ ସଂସ୍ଥା । କରିଛି ସାହାଯ୍ୟ ବ୍ୟବସ୍ଥା ॥
ପନ୍ଦର କୋଡ଼ିଏ ବର୍ଷରେ । ମରଣ ଊଣା ହୋଇପାରେ ॥
ସେ ଭଳି ପ୍ରଚେଷ୍ଟା ଚାଲିଛି । ଭାବନା କର ନାହିଁ କିଛି ॥
ପାଞ୍ଚ ଲକ୍ଷରୁ ହୋଇ ଊଣା । ଉନ୍ନବ ଲକ୍ଷରେ ଗଣନା ॥
ସେପରି ଚାଲିଛି ଉଦ୍ୟମ । ଆରମ୍ଭ ହୋଇଲାଣି କାମ ॥
ନୂଆ ଡାକ୍ତରଖାନାମାନ । ଖୋଲିବା ହେଉଛି ଭିଆଣ ॥
ସ୍ୱତନ୍ତ୍ର ଏହି ରୋଗ ପାଇଁ । ବହୁ ଉଦ୍ୟମ ଅଛି ହୋଇ ॥
ଦିଲ୍ଲୀ, ପାଟଣା ସହରରେ । ଆଉରି ଝବନ୍ଦ୍ର ମଠାରେ ॥
ଯକ୍ଷ୍ମା-ନିବାରୀ ତତ୍ତ୍ୱ ଘେନି । ଏ ତିନି ସ୍ଥାନେ କେନ୍ଦ୍ର ତିନି ॥
ଖୋଲା ହୋଇଛି ଏବେ ଭାଇ । ଯକ୍ଷ୍ମାର ସୁଚିକିତ୍ସା ପାଇଁ ॥
ତହିଁ ଡାକ୍ତର ଶୁଶ୍ରୂଷଗଣ । ହେବେ ଶିକ୍ଷାରେ ସୁନିପୁଣ ॥
ବିଶେଷ ଶିକ୍ଷା ଲଭି କରି । ସେବାରେ ଲାଗିବେ ସବୁରି ॥

## ପଧାନୋବାଚ

ପୁଣି ପଧାନ ପଚାରୁଛି । ଲୋକସଂଖ୍ୟା ତ ବଢ଼ୁ ଅଛି ॥
ରୋଗୀଙ୍କୁ ଚାହିଁ ଚିକିତ୍ସକ । ଦେଶରେ ନାହାନ୍ତି ଅଧିକ ॥
ଚିକିତ୍ସାଳୟର ଅଭାବ । ଏଥିକୁ କହ କିସ ହେବ ?
ବ୍ୟବସ୍ଥା କିଛି ଏଥିପାଇଁ । ଯୋଜନା ଭାଳିଛି କି ନାହିଁ ?

## ଅଧିକାରୀ ଉବାଚ

ଶୁଣି କହିଲେ ଅଧିକାରୀ । ତାଲିମ କେନ୍ଦ୍ରମାନ କରି ॥
ଚାଳକ ଶିକ୍ଷାର ବ୍ୟବସ୍ଥା । ହୋଇଛି ଏହିପରି କଥା ॥
ଆଉରି କେନ୍ଦ୍ର ସରକାର । ବିଷୟରେ କରିଛନ୍ତି ସ୍ଥିର ॥

ଡାକ୍ତର ଶିକ୍ଷା ଅନୁଷ୍ଠାନ । ଗୋଟିଏ ଖୋଲିବେ ବହନ ॥
ଚିକିତ୍ସା ଶିକ୍ଷା ଢଆସିବ । ଗବେଷଣାକୁଁ ଚିନ୍ତାଁ ହେବ ॥
ପୁଣି ପ୍ରଦେଶ ସରକାର । ହୋଇ ଏ ଢଙ୍ଗେ ଅଗ୍ରସର ॥
ନୂଆ କଲେଜ ବସାଇବେ । ଥିବା କଲେଜ ବଢ଼ାଇବେ ॥
ଅଧିକ ସ୍ଥାନ ପଢ଼ାଇବେ । ଉତ୍ତମ ତାଲିମ ପାଇବେ ॥
କେନ୍ଦ୍ର ପ୍ରଦେଶ ସରକାର । କରି ଅଛନ୍ତି ଏ ବିଚାର ॥
ଫଳରେ ବଢ଼ିବେ ଡାକ୍ତର । ବଢ଼ିବେ କମ୍ପାଉଣ୍ଡର ॥
ବଢ଼ିବ ଚିକିତ୍ସା ନିଳୟ । ସର୍କାରୀ ଔଷଧ ଆଳୟ ॥
ଏ ବାବଦରେ ବହୁଧନ । ଯୋଜନା କରିଛି ବିଧାନ ॥

ଦାସୋବାଚ

ଦାସେ କହନ୍ତି ଏ ତ ହେବ । ଦେଶୀ ଚିକିତ୍ସା କାହିଁ ଯିବ ?
ଦେଶୀୟ ଔଷଧ ପ୍ରଚୁର । ନୁହେଁ କି କର୍ତ୍ତବ୍ୟ ଦେଶର ?
ଦେଶୀୟ ବୈଦ୍ୟ କବିରାଜ । ବିଳୟୁ ଉଜୁଛନ୍ତି ଆଜ ॥
ତାଙ୍କର ଶିକ୍ଷା ଲାଭ ପାଇଁ । ଯୋଜନା କିସ ବିଚାରଇ ?
ସେ କଥା କହୁ ଶୁଣାନାହିଁ । ଜାଣିଛ ଯେବେ କହ ଭାଇ ॥

ଅଧିକାରୀ ଉବାଚ

କହିଲେ ଅଧିକାରୀ ହସି । ଭଲତ ମନେ କଲ ଆସି ॥
କଥାଟା ଯାଉଥିଲି ଭୁଲି । କହିଲ ତୁମ୍ଭେ ଥିଲ ବୋଲି ॥
ଶୁଣ ହେ ଯାହା ପଚାରିଲ । ଦେଶୀୟ କଥା ତ ଅସଲ ॥
ଜାମନଗରେ ସରକାର । ଗୋଟିଏ ଗବେଷଣାଗାର ॥
ବିଚାରି, ଅଛନ୍ତି ବସାଇ । କବିରାଜଙ୍କ ଶିକ୍ଷା ପାଇଁ ॥
ଔଷଧାଳୟ ନାନା ସ୍ଥାନେ । ଦେଶୀୟ ଚିକିତ୍ସା ପ୍ରମାଣେ ॥
ବସିବ ବୋଲି ବହୁ ଧନ । ରଖିଛି ଯୋଜନା ବିଧାନ ॥
ବହୁ ଦେଶୀୟ ଚେରମୂଳ । ଯେତେକ ଔଷଧର ମୂଳ ॥

ତହୁଁର ଗବେଷଣା ପାଇଁ । ବିଧାନମାନ ଅଛି ହୋଇ ॥
କାଶ୍ମୀର ଉତ୍ତର ପ୍ରଦେଶ । ଉଦ୍ୟମ କରନ୍ତି ବିଶେଷ ॥
ପ୍ରଧାନ ଔଷଧ ଯେ ମାନ । କରିବା ପାଇଁ ଉତ୍ପନ୍ନ ॥
ପେନସିଲିନ୍ କାରଖାନା । ଯୋଗାଡ଼ ଅଛି ଏ ଯୋଜନା ॥
ଡ଼ି. ଡି. ଟି. ଉତ୍ପନ୍ନ ପାଇଁ । ଆହୁରି କାରଖାନା ଦୁଇ ॥
ଚେଷ୍ଟା କରନ୍ତି ସରକାର । ବସିବ ଶୀଘ୍ର ଏ ଦେଶର ॥
ବିଭିନ୍ନ ଔଷଧ ଉତ୍ପନ୍ନ । ପାଇଁକି ହେଉଛି ଯତନ ॥

ପଧାନୋବାଚ

ଆହୁରି ଶୁଣା ଯାଉ ଅଛି । ନତ ମୁଁ ପାଶୋର ଯାଉଛି ॥
ସନ୍ଦେହ ଫେଡ଼ିବ ପଣ୍ଡୁର । କହିବ ଦେଖି ଅଧିକାରୀ ॥
ଜନମ ନିୟନ୍ତ୍ରଣ ପାଇଁ । ବସ୍ତୁର ପଡ଼େ କାହିଁ ପାଇଁ ?

ଅଧିକାରୀ ଉବାଚ

କହିଲେ ତହୁଁ ଅଧିକାରୀ । ପଧାନେ ଯା ଅଛ ବିଚାରି ॥
ଶୁଣ ମୁଁ ସେ କଥା କହୁଛି । ଲୋକସଂଖ୍ୟା ତ ବଢ଼ୁଅଛି ॥
ଫଳରେ କି ହେଉଛି ଜାଣ । ଟଳୁଛି ଲୋକଙ୍କ ମରଣ ॥
ଉଣା ହେଉଛି ଆୟୁମାନ । ଯାଇବା ସଂଖ୍ୟା ହୁଏ ସ୍ୱାନ ॥
ବିଂଶ ସ୍ୱଳଣ ବର୍ଷ ଆଗେ । ଜନ୍ମ ମରଣ ବେଣି ଭାଗେ ॥
ପ୍ରାପ୍ତ ସମାନ ଥିଲ ଭାଇ । ଏବେ ସେ କଥା ଆଉ ନାହିଁ ॥
ଡାକ୍ତରୀ ଚିକିତ୍ସାରେ ଜାଣ । କମିଛି ମୃତ୍ୟୁ ପରିମାଣ ॥
ଜନ୍ମଟିର ନ ବଦଳି କିଛି । ଯେତିକ ସେତିକରେ ଅଛି ॥
ଭୂମି ତ ଆଉ ନ ବଢ଼ଇ । ଅଳପ ବହୁତ ନୁହଇ ॥
ବହୁତ ଲୋକ ଅଳ୍ପ ଭୂଇଁ । ଅଭାବ ତେଣୁ ଘୁଞ୍ଚୁନାହିଁ ॥
କଥାଏ କହୁଛି ଆହୁରି । ଭାବିବା ଉଚିତ ସବୁରି ।
ଗ୍ରାମେ, ସହରେ ଦେଖ ଯାଇ । ବହୁ ପ୍ରସବ-ବନ୍ଧ ହୋଇ ॥

ଦୁର୍ବଳ ସ୍ୱାସ୍ଥ୍ୟକୁ ହରାଇ । ଯୁବତୀ ବୁଢ଼ୀ ପାଲଟଇ ॥
କେହୁ ପ୍ରସବବତୀ ମାତା । ସଂସାର ମଣେ ବିଷପିତା ॥
ଜୀବନ ତାର ନାରଖାର । ଦେଖୁନ୍ତି ଦେଶର ବେଭାର ॥
ତୁମ୍ଭେ ତ ଅଟ ହେ ସଂସାରୀ । ଦେଖିଲ ଏ କଥା ଉଗ୍ରର ॥
ଜନ୍ମର ନିରୋଧ ହୋଇଲେ । ସଂସାର ସଞ୍ଜିଯିବ ହେଲେ ॥
ପୁଣି କଥାଏ କହୁଛଇଁ । ବିଚାର କର ଦେଖଭାଇ ॥
କେହୁ ସନ୍ତାନ ଜନ୍ମ ହୋଇ । ଉଚିତ ଯତନ ନ ପାଇ ॥
ଉତ୍ତମ ଲୋକ ନ ହୋଇବେ । ସଂସାରେ ଗଳଗ୍ରହ ହେବେ ॥
ଏଥିକୁ ଜନ୍ମ ନିୟନ୍ତ୍ରଣ । ହୋଇବ ହିତର କାରଣ ॥
ଏ ଯେନ ଶିକ୍ଷା ପ୍ରସାରଣ । ଯୋଜନା କରିଛି ଗ୍ରହଣ ॥
ଲାଗିଛି ନାନା ଗବେଷଣା । ହେବ କିପରି ଜନ୍ମ ଊଣା ॥
ହୋଇବ ଜନ ଉପକାର । ଲାଗି ପଡ଼ିଛି ସରକାର ॥
ସ୍ୱାସ୍ଥ୍ୟର ଏସବୁ ବିଧାନ । କହିଲି ଭାଇ ମନେ ଘେନ ॥
ସବୁ କଥାକୁ ଏକା ସାହା । ହେବ କାଳିଆ ଚତୁର୍ବାହା ॥
କାମନା ହୋଇବ ସଫଳ । ଆନନ୍ଦେ ହରି ହରି ବୋଲ ॥

ଇତି ଶ୍ରୀ ଯୋଜନା ଭାଗବତେ ସ୍ୱାସ୍ଥ୍ୟ ବିଧାନ
ବର୍ଣ୍ଣନେ ନାମ ଏକାଦଶ ଅଧ୍ୟାୟ ।

---

## ଦ୍ୱାଦଶ ଅଧ୍ୟାୟ

### ପଧାନୋବାଚ

ପଧାନେ କହନ୍ତି ହେ ଭାଇ । ସକଳ ତତ୍ତ୍ୱ ଶୁଣିଲଇଁ ॥
ସବୁ ଅମ୍ଭର ହିତେ ଜାଣି । ଯୋଜନା କରୁଛି ଭିଆଣି ॥
ପାଞ୍ଚ ବରଷ ମଧ୍ୟେ ସତେ । ବୁହିଁବେ ପ୍ରଭୁ ଜଗନ୍ନାଥେ ॥

ଯୋଜନା ସଫଳ ହୋଇବ । ଆମ୍ଭର ଦୁଃଖକଷ୍ଟ ଯିବ ॥
ଶିକ୍ଷା ପ୍ରସାର ହେବାପାଇଁ । କି ଯତ୍ନ ଶୁଣିଲେଁ ତ ନାହିଁ ॥
ଶିକ୍ଷା ବିହନେ ଧନ ଥାଇ । କି ହେବ ଫଳ କହ ଭାଇ ?
ଶିକ୍ଷା ତ ଦେଶ ମେରୁଦଣ୍ଡ । ଅଶିକ୍ଷା ଦୋଷେ ସବୁ ପଣ୍ଡ ॥
ଶିକ୍ଷାର ଉନ୍ନତି ବିଧାନେ । କି ଅଛି ସରକାର ମନେ ॥
ସେ କଥା କହିବ ବୁଝାଇ । ନନା ହୋ, ଦୋଷ ଧର ନାହିଁ ॥

ମନ୍ତ୍ରୀବାଚ

ମନ୍ତ୍ରେ କହିଲେ ହସି କରି । ଅଶିକ୍ଷିତଟି ପଶୁ ସରି ॥
ଶିକ୍ଷିତ ନୋହିଲେ ବହୁତ । ସରିବ ଦେଶର ମହତ ॥
ଶିକ୍ଷା ଉନ୍ନତି ଲାଗି ଧନ । ପ୍ରଭୂତ ହୋଇଛି ବିଧାନ ॥
ପ୍ରଦେଶେ ସରକାର ଗଣ । ବ୍ୟୟ କରନ୍ତି ଯେଉଁ ଧନ ॥
ତହିଁ ବାହାରେ ଏଥିପାଇଁ । ଯୋଜନା ସାହାଯ୍ୟ ଦିଅଇ ॥
ବର୍ଷକୁ ବର୍ଷ ଶିକ୍ଷା ସଂସ୍ଥା । ବଢ଼ି ଚାଲିଛି ଏ ବ୍ୟବସ୍ଥା ॥
ତଥାପି ଶିକ୍ଷା ସଂବିଧାନ । ଲୋଡ଼ଇ ଗୁରୁତର ଧ୍ୟାନ ॥
ଏକା ଏ ଦେଶ ସରକାର । ତୁଲାଇବାକୁ ବ୍ୟୟଭାର ॥
ସମର୍ଥ ନ ହୋଇବେ ଭାଇ । ସବୁରି ସହଯୋଗ ଚାହିଁ ॥
ଅର୍ଥ ଅଥବା ଭୂମି ଦେଇ । କି ଅବା ଶିକ୍ଷାଳୟ ପାଇଁ ॥
ଗୃହ ନିର୍ମାଣ ଦେଲେ କରି । ମଙ୍ଗଳ ହୋଇବ ସବୁରି ॥
ସର୍ବିସ୍ୱ ସହଯୋଗ କଲେ । ଶିକ୍ଷା ଉନ୍ନତ ହେବ ବଳେ ॥

ପଧାନୋବାଚ

ପ୍ରଧାନ ପୁଣି ପଚାରଇ । କି କି ବିଧାନ ଅଛି ହୋଇ ॥
ଶିକ୍ଷା ନୋହିଲେ ବାଳକାଳେ । ସିଦ୍ଧ ନ ହୁଏ କାଳେ କାଳେ ॥
ଏଣୁ ହେ ବାଲ୍ୟଶିକ୍ଷା ପାଇଁ । ଯୋଜନା କସ ବିସ୍ତରଇ ?
ଜାଣିଲେ ତୃପ୍ତ ହେବ ମନ । ଶିକ୍ଷାଦାନର କି ବିଧାନ ॥

## ମିଶ୍ରୋବାଚ

କହନ୍ତି ମିଶ୍ରେ ଶୁଣ ତେବେ । ସେ କଥା କହୁଥାଇଁ ଏବେ ॥
ଛଅରୁ ବୟସ ଏଗାର । ପିଲଙ୍କ ପାଇଁ ସରକାର ॥
କରି ଅଛନ୍ତି ଏବେ ଥୟ । ବହୁ ସ୍କୁଲରେ ଶିକ୍ଷାଳୟ ।
ଉଣିଶି ଶହ ଏକାବନ । ସାଲରେ ଥିଲଟି ବିଧାନ ॥
ଶହକେ ପ୍ରାୟ ଚୌରାଳିଶି । ଅଥବା ଆଉ ପାଞ୍ଚ ବେଶି ॥
ଶିକ୍ଷାର୍ଥୀ ପଢ଼ୁଥିଲେ ତହିଁ । ଏ କଥା ଆଜ ଆଉ ନାହିଁ ॥
ଷାଠିଏ ଭାଗ ଶତକରା । ପଢ଼ିବେ ହୋଇଅଛି ଧାରା ॥
ଏଗାର ବରଷୁଁ ଯାହାର । ବୟସ ଅଟଇ ସତର ॥
ସେ ଭଳି ପଢ଼ୁଆଙ୍କ ପାଇଁ । ଖୋଲୁଛି ହାଇ: ସ୍କୁଲ ଭାଇ ॥
ଅଧିକ ଇସ୍କୁଲ ବସିବ । ଶିକ୍ଷାର ଉନ୍ନତି ହୋଇବ ॥
ଏଗାର ଭାଗ ଥିଲା ଯାହା । ପନ୍ଦର ଭାଗ ହେବ ତାହା ॥
ପାଞ୍ଚ ବରଷ ଯୋଜନାର । ଶେଷକୁ ଏହି ଆଶା କର ॥
ସମାଜ ଗଠନ ବିଧାନ । ଶିକ୍ଷା ଲଭିବେ ବହୁଜନ ॥
ଚଉଦବରଷିଆ ଯେତେ । ପୁଣି ଗୃଜଣ ପରିଯନ୍ତେ ॥
ଏଭଳି ଶିକ୍ଷା ଲଭ ପାଇଁ । ତାଙ୍କରି ଯୋଗ୍ୟତା ଅଟଇ ॥
ତିରିଶ ଭାଗ ଶତକରା । ଶିକ୍ଷିତ ହେବେ ଏହାଦ୍ୱାରା ॥
ପୁଣିହିଁ ବିଶ୍ୱବିଦ୍ୟାଳୟ । ଶିକ୍ଷା ବର୍ଦ୍ଧନେ ଅଛି ଲୟ ॥

## ପଧାନୋବାଚ

ଶୁଣ ହେ ମିଶ୍ରେ ପଚାରୁଛୁ । ଲୋକରେ ଯାହା ମୁଁ ଶୁଣୁଛି ॥
ଯେ ଶିକ୍ଷା ପ୍ରଚାର ହେଉଅଛି । ତହିଁରେ ବହୁ ଦୋଷ ଅଛି ॥
ପରିବର୍ତ୍ତନ ପାଇଁ ଏହା । ବିଧାନ କସ କହ ତାହା ॥
ପଧାନ ଏହା ପଚାରନ୍ତେ । ମିଶ୍ରେ କହିଲେ ଶୁଣ ଏତେ ॥

## ମିଶ୍ରୋବାଚ

ଯାହା କହିଲ ହେ ପ୍ରଧାନ । ତହିଁକ ହେଉଛି ବିଧାନ ॥
କହି ପଢ଼ାକୁ ମୁଖ୍ୟକରି । ପିଲାଏ ହେଲେ ଶିକ୍ଷାସାରି ॥
ତାଙ୍କର ସାଧାରଣ ଜ୍ଞାନ । କେବେହେଁ ନୋହିବ ସମ୍ପୂର୍ଣ୍ଣ ॥
ଏଣୁ ପାଠ ଶେଷକରି । ଚଳିବେ କାହୁଁ ବୃତ୍ତି ଧରି ॥
ତହିଁକ ହୁଅନ୍ତି ଅମଙ୍ଗ । ଏହା ତ ଏବେ ଦେଶ ଢଙ୍ଗ ॥
ପ୍ରେରଣା ମଧ୍ୟ ତହିଁନାହିଁ । ନୂତନ ଉଦ୍ଭାବନ ପାଇଁ ॥
ଏପରି କାର୍ଯ୍ୟ ହେଲେ ଭାଇ । ଦେଶ ଉନ୍ନତି ଆଶା କାହିଁ !
ଏଥିକୁ ଦେଶ ସରକାର । ମନରେ କରିଛନ୍ତି ସ୍ଥିର ॥
ଆଉ ଅପର ପ୍ରାଇମେରୀ । ଶିକ୍ଷା ନ ରହି ଆଗପରି ॥
ବେସିକ ବିଦ୍ୟାଳୟ ହେବ । ବିବିଧ ଶିକ୍ଷା ଦିଆଯିବ ॥
ଯେ ଯାହା ବୃତ୍ତିକୁ ଅନାଇ । ଶିକ୍ଷା ଲଭିବେ ସର୍ବେ ତହିଁ ॥
ଆଜି ତ ପାଠ ପଢ଼ି ସାରି । ସକଳେ ଖୋଜିଲେ ଚାକିରୀ ॥
ଦେହ ଖଟିବା କାର୍ଯ୍ୟହେଲେ । ନାକଟି ସରିବେ ଟେକିଲେ ॥
ଶରୀର ଶ୍ରମ ତେଣୁ କରି । ବାଧ୍ୟତାମୂଳକରେ ଧରି ॥
ବେସିକ ଶିକ୍ଷାନୀତି ହେବ । ମନରୁ ଘୃଣା ଚଳି ଯିବ ॥
ବେସିକ ଶିକ୍ଷା ଅନୁସାରେ । କଳ୍ପଣା ହୁଏ ଏ ପ୍ରକାରେ ॥
ପଲ୍ଲୀର ବିଶ୍ୱବିଦ୍ୟାଳୟ । ଗଢ଼ିବା ହୋଇଅଛି ଥୟ ॥
ଯୁବକମାନେ ଠାବେ ଠାବେ । ଶ୍ରମିକ ଶିବିର ସ୍ଥାପିବେ ॥
ଏଥି ସକାଶେ ଧନ ବ୍ୟୟ । ହେବାର ହୋଇଛି ନିଶ୍ଚୟ ॥
ଅଠର ବର୍ଷରୁ ବାଇଶ । ଅଟଇ ଯାହାଙ୍କ ବୟସ ॥
ପରିଶ୍ରମକୁ ବାଧ୍ୟ ହେବେ । ଛ'ମାସ ଶିକ୍ଷା ସେ ଲଭିବେ ॥
ଏକ ବରଷ ପରିଯନ୍ତ । ଏହି ଶିକ୍ଷାର ଅଛି ଅନ୍ତ ॥
କ୍ରମେ ଏ ଶିକ୍ଷା ବୃଦ୍ଧିହେବ । ସକଳ ସ୍ଥାନେ ପ୍ରବର୍ତ୍ତିବ ॥

ଯେ ପ୍ରାନ୍ତେ ଶିକ୍ଷାର ଅଭାବ । ଗୁରୁତ୍ୱ ତହିଁ ଲକ୍ଷ୍ୟ ହେବ ॥
ବିଭିନ୍ନ ଶ୍ରେଣୀ ଦେଶେ ପୁଣି । ଶିକ୍ଷାର ତାରତମ୍ୟ ଜାଣି ॥
ଯୋଜନା କମିଶନ ଭଳି । ଆସନ୍ତୁ ଏହା ସ୍ଥିର କରି ॥
ଅଧିକ ସାହାଯ୍ୟ ସେ ଦେବେ । ଅନେକେ ଶିକ୍ଷିତ ହୋଇବେ ॥
ପଲ୍ଲୀଗ୍ରାମରେ ଶିକ୍ଷା ପାଇଁ । ବିଶେଷେ ବିସ୍ତାର ପଡ଼ିଇ ॥
କୁମ୍ଭାର, ବଢାଇ, କମାର । ଏ ଆଦି ଯେତେ କାରିଗର ॥
ନିଜର ବୃତ୍ତି ବିଷୟରେ । ଶିକ୍ଷା ପାଇବେ ସ୍ୱଚ୍ଛନ୍ଦରେ ॥
ତାଲିମ କେନ୍ଦ୍ର ଠାବେ ଠାବେ ଏ ଭଳି ବୃତ୍ତି ଶିକ୍ଷା ଦେବେ ॥
ପୁଣି ମହିଳା ମାନଙ୍କର । ଶିକ୍ଷାର ହୋଇବ ପ୍ରସାର ॥
ପାଇବେ ପ୍ରାଥମିକ ଶିକ୍ଷା । ଏକଜେ ବାଳକ ବାଳିକା ॥
ହାଇ:ସ୍କୁଲର ଶିକ୍ଷା ବେଳେ । ସେ ଭଳି ଆବଶ୍ୟକ ହେଲେ ॥
ସ୍ୱତନ୍ତ୍ର ବିଦ୍ୟାଳୟ ହେବ । ଝିଅଙ୍କୁ ଶିକ୍ଷା ଦିଆଯିବ ॥
ଆବର ଝିଅମାନେ ଘରେ । ପଢ଼ି ପରୀକ୍ଷା ଦେବେ ଭଲେ ॥

ପ୍ରଧାନୋବାଚ

ପୁଣି ପ୍ରଧାନ ପଚାରଇ । ଶୁଣିଲୁଁ ଯାହା ଗଲ କହି ॥
ବେସିକ ଆଉ ସାଧାରଣ । ଶିକ୍ଷାର ଯୋଗ ସମାଧାନ ॥
କପରି ମିଶ୍ରେ ହେବ କହ ? ମନରେ ରହିଲା ସନ୍ଦେହ ॥

ମିଶ୍ରୋବାଚ

ମିଶ୍ରେ କହିଲେ ଏଥିପାଇଁ । ଯୋଜନା ଅଛି ସ୍ଥିର ହୋଇ ॥
ବେସିକ ଶିକ୍ଷାର ବିଧାନ । ହୋଇବ ଏବେ ପ୍ରଚଳନ ॥
ଏଣିକି ଆଉ ପ୍ରାଇମେରୀ । ଶିକ୍ଷା ଆଳୟ ପୂର୍ବ ପରି ॥
ଖୋଲା ନୋହିବା ହେଲା ସ୍ଥିର ଏହାଟି ଯୋଜନା ବିସ୍ତାର ॥
ଯେତେକ ପ୍ରାଇମେରୀ ସ୍କୁଲ । ବେସିକ ଶିକ୍ଷା ଦେବା ମୂଳ ॥
ଯେ ଅଛି ଉଚ୍ଚବିଦ୍ୟାଳୟ । ଯୋଜନା କରିଅଛି ଥୟ ॥

ପରିବର୍ତ୍ତନ ଅଣାଯିବ । ବେସିକ ଶିକ୍ଷା ପ୍ରବର୍ତ୍ତିବ ॥
ପଲ୍ଲୀର ବିଶ୍ୱବିଦ୍ୟାଳୟ । ଖୋଲିବ ଗୋଟିଏ ନିଶ୍ଚୟ ॥
ତହିଁରେ ଶିକ୍ଷିତ ଯେ ହେବେ । ଅଥବା ଉପାଧି ଲଭିବେ ॥
ଯେ ବିଶ୍ୱବିଦ୍ୟାଳୟ ଅଛି । ପ୍ରଭେଦ ତହିଁ ନୋହି କିଛି ॥
ଯୋଗ୍ୟତା ହୋଇବ ସମାନ । କେହି ନୋହିବେ ବଡ଼ସାନ ॥
ଯେ ସବୁ ଶିକ୍ଷକ ଅଛନ୍ତି । ଅଳ୍ପ ବେତନ ସେ ଭୋଗନ୍ତି ॥
ଏଣୁ ବେତନ ବୃଦ୍ଧି ପାଇଁ । ବ୍ୟବସ୍ଥା ପୁଣି ଅଛି ହୋଇ ॥
ଅନ୍ୟାନ୍ୟ ବୃତ୍ତିକଙ୍କ ସମାନ । ଶିକ୍ଷକେ ଲଭିବେ ସମ୍ମାନ ॥
ଯୋଜନା ମତ ଦେଇଛନ୍ତି । ତାଙ୍କ ସନ୍ତାନ ଯେ ଅଛନ୍ତି ॥
ଶିକ୍ଷା ଲଭିବେ ବିନା ବ୍ୟୟେ । ଯୋଜନା ଆଉ ପୁଣି କହେ ॥
ଗ୍ରାମେ ଯେ ଶିକ୍ଷକେ ଅଛନ୍ତି । ଦେବାକୁ ତାଙ୍କୁ ଭୂସମ୍ପତ୍ତି ॥
ଯହିଁରୁ କରି ଉତ୍ପାଦନ । ସୁଖରେ କାଟିବେ ସେ ଦିନ ॥
ସନ୍ଧ୍ୟାର ଅବସର କାଳେ । ସମାଜ ଶିକ୍ଷାର ପ୍ରସାରେ ॥
ଅନ୍ୟମାନଙ୍କୁ ପଢ଼ାଇବେ । ଅଧିକା ବେତନ ପାଇବେ ॥

ପ୍ରଧାନୋବାଚ

ପ୍ରଧାନ ପୁଣି ପଚାରୁଛି । ବୁଝିତ ନ ପାରିଲି କିଛି ॥
ସମାଜ ଶିକ୍ଷା ବୋଲି ଯାହା । କହିଲେ ମିଶ୍ର କସ ତାହା ?
କାହିଁକି ତହିଁ ପାଇଁ ଧ୍ୟାନ । ଦେଇ ଅଛନ୍ତି କମିଶନ ॥

ମିଶ୍ରୋବାଚ

ମିଶ୍ରେ କହନ୍ତି ଶୁଣ ବାବୁ । ବୁଝାଇ କହୁଛି ମୁଁ ସବୁ ॥
ଅକ୍ଷର ମାନଙ୍କ ଚିହ୍ନିଲେ । କି ଫଳ ହୋଇବ ତହିଁରେ ?
ଦେଶର ଭଲ ମନ୍ଦ ଯାହା । ଜାଣି ତ ନ ପାରିବେ ତାହା ॥
ଦେଶ କାଳର ଗତି ସ୍ଥିତି । ସ୍ୱାସ୍ଥ୍ୟ ସମ୍ପଦ ଅର୍ଥନୀତି ॥
ଥିରେ ହୋଇବ ସୁଜାଣ । ନାଗରିକର ଏ ଲକ୍ଷଣ ॥

ଯେ ସାବାଳକ ଶିକ୍ଷାବିଧି । ଦେଶରେ ଲଭିଛି ପ୍ରସିଦ୍ଧି ॥
ତହିଁ ସହିତ ଏହି ଜ୍ଞାନ । ଶିକ୍ଷାର ହୋଇଛି ବିଧାନ ॥
ସେହିଟି ସାମାଜିକ ଶିକ୍ଷା । ନାଶିବ ଦେଶର ଅଶିକ୍ଷା ॥
ତେଣୁ ଏ ରୂପ ଶିକ୍ଷାଦାନ । ବଜେଟରେ ହୋଇଛି ପ୍ରଧାନ ॥
ଶିକ୍ଷା ଉନ୍ନତି ଲାଗି ବ୍ୟୟ । ହୋଇବ ବୋଲି ଯାହା ଥୟ ॥
ତା ଦଶ ଭାଗୁଁ ଏକଭାଗ । ଏ ପଥେ ହୋଇବ ନିୟୋଗ ॥
ସକଳେ ଶୁଣି ସୁଖି ହେଲେ । ଆନନ୍ଦେ ହରିବୋଲ ଦେଲେ ॥

ଇତି ଶ୍ରୀ ଯୋଜନା ଭାଗବତେ ଶିକ୍ଷା ବିଧାନ
ବର୍ଣ୍ଣନେ ନାମ ଦ୍ୱାଦଶ ଅଧ୍ୟାୟ ।

---

## ତ୍ରୟୋଦଶ ଅଧ୍ୟାୟ

ପର ଦିବସ ସୂର୍ଯ୍ୟ ଅସ୍ତେ । ସଭାକୁ ଆସିଲେ ସମସ୍ତେ ॥
ପୁରାଣ ପଣ୍ଡା ଆଗେ ଥିଲେ । ପୁରାଣ ପାଠ ଶେଷ କଲେ ॥
ଦାସେ ମିଶ୍ରଙ୍କୁ ପଚାରନ୍ତି । ଏ ଦେଶେ ଅନୁନ୍ନତ ଜାତି ॥
ଜାଣ ତ ଅନେକ ଅଛନ୍ତି । କିପରି ତାଙ୍କର ଉନ୍ନତି ॥
ଯୋଜନା ଅଛି ମନେ ଚିନ୍ତି । ଦିଅ ହେ ତହିଁର ବିବୃତି ॥

### ମିଶ୍ରୋବାଚ

ମିଶ୍ରେ କହିଲେ ଦାସେ ଶୁଣ । ଏଥିକୁ ସ୍ୱତନ୍ତ୍ର ବିଧାନ ॥
ଯୋଜନା କରିଛି ପ୍ରସ୍ତାବ । ଯହିଁରେ ଫଳ ଲାଭ ହେବ ॥
ଜାଣ ତ ଶିକ୍ଷାର ପ୍ରସାର । ଅଟଇ ଉନ୍ନତିର ମୂଳ ॥
ଯେ ଛନ୍ତି ଅନୁନ୍ନତ ଭାଇ । ଆବର ଆଦିବାସୀ ଯହିଁ ॥
ଉନ୍ନତି ସାଧନ ତାଙ୍କର । ଏକାନ୍ତ ଲକ୍ଷ୍ୟ ଯୋଜନାର ॥
ଉଚ୍ଚ ଶିକ୍ଷିତ ହେବା ପାଇଁ । ବିହିତ ବୃତ୍ତି ଖଞ୍ଜାଯାଇ ॥
ପୁସ୍ତକମାନ ବିନା ମୂଲ୍ୟେ । ମିଳିବ ଆବଶ୍ୟକ ବେଳେ ॥

ବିନା ବ୍ୟୟରେ ଗୃହାବାସ । ମିଳିବ ଅଛନ୍ତି ପ୍ରୟାସ ॥
ଆପଣା ଇଚ୍ଛା ପରିମାଣେ । ଶିକ୍ଷିତ ହୋଇବେ ସେମାନେ ॥
ଧନ ଅଭାବେ ଯେହ୍ନେ କେହି । ଶିକ୍ଷା ବଞ୍ଚିତ ହେବେ ନାହିଁ ॥
ଆଚରିବାକୁ କେଉଁ ବୃତ୍ତି । କେ ଯେବେ ଲୋଡ଼ିବ ସମ୍ପତ୍ତି ॥
ଋଣ ବା ସାହାଯ୍ୟ ଆକାରେ । ମିଳିବ ତାହା ସହଜରେ ॥
ଋକଶ ପାଇଁ ଇଚ୍ଛା କଲେ । ଉନ୍ନତ ଜାତିଙ୍କର ଭୁଲେ ॥
ଭ୍ରାତୃଦ୍ୱନ୍ଦ୍ୱତା ଅସୁବିଧା । ଘଟାଇ ନ ପାରିବ ବାଧା ॥
ତହିଁକି ବ୍ୟବସ୍ଥା ହୋଇଛି । ସ୍ୱତନ୍ତ୍ରଭାବେ ସଂସ୍ଥା ଅଛି ॥
ଆଦିବାସୀଙ୍କ ପାଇଁ ପୁଣି । ଯୋଜନା ଅଛି ମନେ ଗୁଣି ॥
ଡାକ୍ତରି ଚିକିତ୍ସା ବିଧାନ । ବ୍ୟବସ୍ଥା ହୋଇବଟି ଜାଣ ॥
ନିର୍ମାଣ ହେବ ପଥଘାଟ । ଘୁଞ୍ଚିବ ପଥିକ ସଙ୍କଟ ॥
ପାଞ୍ଚ ବରଷ ଯୋଜନାର । ଅଟଇ ଏମନ୍ତ ବିସ୍ତର ॥
ଯୋଜନା ଭାଗବତ ଶେଷ । ସୁଜନ ନ ଧେନିବ ଦୋଷ ॥
ଜନମ ହୋଇଲେ ମରଣ । ଏ ତହୁଁ ସତ୍ୟ ନାହିଁ ଜାଣ ॥
ଯିବା ସକଳେ କାଳବଳେ । କୀର୍ତ୍ତି ରହିବ ମହୀତଳେ ॥
ଜନନୀ ଜନ୍ମଭୂମି ପାଇଁ । ସକଳେ ଆଗୁସାର ହୋଇ ॥
କର୍ମ ସାଧନେ ଦେବା ଚିତ୍ତ । ସାହା ହୋଇବେ ଜଗନ୍ନାଥ ॥
କର୍ମଟି ଜୀବନର ଧନ୍ଦା । ନିଷ୍କର୍ମା କରେ ଭାଗ୍ୟ ନିନ୍ଦା ॥
ସହଯୋଗର ଚିନ୍ତା ଧରି । ଅଳସ ନୋହି କର୍ମ କରି ॥
ସତ୍ୟ ଅହିଂସା ଆଶ୍ରେ କରି । ଆନନ୍ଦେ ବୋଲ ହରି ହରି ॥

ଇତି ଶ୍ରୀ ଯୋଜନା ଭାଗବତେ ବିବିଧ ଶିକ୍ଷା ବିଧାନ
ବର୍ଣ୍ଣନେ ନାମ ତ୍ରୟୋଦଶ ଅଧ୍ୟାୟ ସମ୍ପୂର୍ଣ୍ଣ ।

## ସ ମା ପ୍ତ

